# ହିତୋପଦେଶ

( ଦ୍ୱିତୀୟ ଖଣ୍ଡ : ସୁହୃଦ୍‌ଭେଦ )

[ ମୂଳ ସଂସ୍କୃତ ଶ୍ଳୋକସମୂହ ସହିତ ]

ଅନୁବାଦକ

ଅଧ୍ୟାପକ ଶ୍ରୀଧର ଦାସ



ପ୍ରକାଶକ :

ଶ୍ରୀ ଅଭିରାମ ମହାପାତ୍ର, ବି. ଏ.

ଗ୍ରନ୍ଥ ମନ୍ଦିର

କଟକ-୨ : ବ୍ରହ୍ମପୁର

ମୁଦ୍ରାକର :

ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦାଶ

ଅନ୍ନଦା ପ୍ରେସ

ତୁଳସୀପୁର : କଟକ—

ପ୍ରଥମ ମୁଦ୍ରଣ :

ନଭେମ୍ବର, ୧୯୭୧

ମୂଲ୍ୟ : ଟ ୨.୦୦

# ସୁହୃଦ୍‌ଭେଦ

ରାଜପୁତ୍ରମାନେ କହିଲେ, "ଆର୍ଯ୍ୟ, ଆମ୍ଭେମାନେ ମିତ୍ରଲାଭ କଥା ଶୁଣିଲୁ । ବର୍ତ୍ତମାନ ସୁହୃଦ୍‌ଭେଦ କଥା ଶୁଣିବାକୁ ଇଚ୍ଛା କରୁଛୁ ।" ବିଷ୍ଣୁଶର୍ମା କହିଲେ—ଆଚ୍ଛା, ସୁହୃଦ୍‌ଭେଦ କଥା ଶୁଣ । ତାହାର ପ୍ରଥମ ଶ୍ଳୋକଟି ହେଉଛି—

ବର୍ଦ୍ଧମାନୋ ମହାନ୍ ସ୍ନେହୋ ମୃଗେନ୍ଦ୍ରବୃଷୟୋର୍ବନେ ।
ପିଶୁନେନାତିଲୁବ୍‌ଧେନ ଜମ୍ବୁକେନ ବିନାଶିତଃ । ୧ ।

ବନରେ ସିଂହ ଓ ବୃଷଭଙ୍କ ମଧ୍ୟରେ ଯେଉଁ ପ୍ରଗାଢ଼ ସ୍ନେହ ବୃଦ୍ଧି ପାଉଥିଲା, ତାହା ଅତିଲୋଭୀ ଦୁଷ୍ଟ ଶୃଗାଳଦ୍ୱାରା ବିନଷ୍ଟ ହେଲା । ୧ ।

ରାଜପୁତ୍ରମାନେ କହିଲେ— ଏହା କିପରି ହେଲା ? ବିଷ୍ଣୁଶର୍ମା କହିଲେ—ଦକ୍ଷିଣାପଥରେ ସୁବର୍ଣ୍ଣବତୀ ବୋଲି ଗୋଟିଏ ନଗରୀ ଅଛି । ସେଠାରେ ବର୍ଦ୍ଧମାନ ନାମରେ ଜଣେ ବଣିକ ବାସ କରୁଥିଲେ । ତାଙ୍କର ପ୍ରଚୁର ଧନ ଥିଲା । ତଥାପି ଅନ୍ୟାନ୍ୟ ଅତ୍ୟନ୍ତ ଧନବନ୍ତ ବନ୍ଧୁମାନଙ୍କୁ ଦେଖି ସେ ମନେ କଲେ ଯେ ଆହୁରି ଧନବୃଦ୍ଧି କରିବା ଉଚିତ । କାରଣ—

ଅଧୋଽଧଃ ପଶ୍ୟତଃ କସ୍ୟ ମହିମା ନୋପଚୀୟତେ
ଉପର୍ଯ୍ୟୁପରି ପଶ୍ୟନ୍ତଃ ସର୍ବ ଏବ ଦରିଦ୍ରତି । ୨ ।

ନିଜଠାରୁ ତଳକୁ ତଳକୁ ଚାହିଁଲେ କେଉଁ ମନୁଷ୍ୟର ମହତ୍ତ୍ୱ ବୃଦ୍ଧି ପାଏ ନାହିଁ ? ନିଜଠାରୁ ଉପରକୁ ଉପରକୁ ଚାହିଁଲେ ସମସ୍ତେ ନିଜକୁ ଦରିଦ୍ର ମନେ କରନ୍ତି । ୨ । ଅର୍ଥାତ୍ ନିଜଠାରୁ ଊଣା ଧନୀକୁ ଦେଖିଲେ ଲୋକ ନିଜକୁ ବଡ଼ ଧନୀ ମନେ କରେ; ନିଜଠାରୁ ବଡ଼ ଧନୀକୁ ଦେଖିଲେ ଲୋକ ନିଜକୁ ଦରିଦ୍ର ମନେକରେ । ପୁଣି—

ବ୍ରହ୍ମହାଽପି ନରଃ ପୂଜ୍ୟୋ ଯସ୍ୟାସ୍ତି ବିପୁଳଂ ଧନମ୍ ।
ଶଶିନସ୍ତୁଲ୍ୟବଂଶୋଽପି ନିର୍ଦ୍ଧନଃ ପରିଭୂୟତେ । ୩ ।

ଯାହାର ବିପୁଳ ଧନ ଥାଏ, ସେ ବ୍ରହ୍ମହତ୍ୟାକାରୀ ହୋଇଥିଲେହେଁ ପୂଜା ପାଏ; କିନ୍ତୁ ଚନ୍ଦ୍ରସଦୃଶ ଉଜ୍ଜ୍ୱଳ କୁଳରେ ଜନ୍ମିଥିଲେ ସୁଦ୍ଧା ଦରିଦ୍ର ବ୍ୟକ୍ତି ଅପମାନିତ ହୋଇଥାଏ । ୩ । ପୁଣି—

ଅବ୍ୟବସାୟିନମଳସଂ ଦୈବପରଂ ସାହସାଚ୍ଚ ପରିହୀନମ୍ ।
ପ୍ରମଦେବ ହି ବୃଦ୍ଧପତିଂ ନେଚ୍ଛତ୍ୟୁପଗୂହିତୁଂ ଲକ୍ଷ୍ମୀଃ । ୪ ।

ଯେପରି ଯୁବତୀ ସ୍ତ୍ରୀ ବୃଦ୍ଧପୁରୁଷକୁ ଆଲିଙ୍ଗନ କରିବାକୁ ଇଚ୍ଛା କରେ ନାହିଁ, ସେହିପରି ଉଦ୍ୟମହୀନ, ଆଳସ୍ୟପରାୟଣ, ଦୈବନିର୍ଭରଶୀଳ, ସାହସହୀନ ଲୋକକୁ ଲକ୍ଷ୍ମୀ ଆଲିଙ୍ଗନ କରିବାକୁ ଇଚ୍ଛା କରନ୍ତି ନାହିଁ । ୪ । ପୁଣି—

ଆଳସ୍ୟଂ ସ୍ତ୍ରୀସେବା ସରୋଗତା ଜନ୍ମଭୂମିବାତ୍ସଲ୍ୟମ୍ ।
ସନ୍ତୋଷୋ ଭୀରୁତ୍ୱଂ ଷଡ୍‌ବ୍ୟାଘାତା ମହତ୍ତ୍ୱସ୍ୟ । ୫ ।

ଆଳସ୍ୟ, ନାରୀପ୍ରତି ଆସକ୍ତି, ରୁଗ୍‌ଣତା, ଜନ୍ମଭୂମିପ୍ରତି ଆସକ୍ତି, ସନ୍ତୋଷ ଓ ଭୀରୁତା, ଏ ଛଅଟି ମହତ୍ତ୍ୱଲାଭର ଅନ୍ତରାୟ ଅଟନ୍ତି । ୫ । ଯେହେତୁ—

ସମ୍ପଦା ସୁସ୍ଥିରଂମନ୍ୟୋ ଭବତି ସ୍ୱଳ୍ପୟାପି ଯଃ ।
କୃତକୃତ୍ୟୋ ବିଧିର୍ମନ୍ୟେ ନ ବର୍ଦ୍ଧୟତି ତସ୍ୟ ତାମ୍‌ । ୬ ।

ଅଳ୍ପ ସମ୍ପଦରେ ଯେ ନିଜକୁ ସୁପ୍ରତିଷ୍ଠିତ ମନେ କରେ, ତାହାର ଭାଗ୍ୟ ମଧ୍ୟ କୃତକୃତ୍ୟ ହୋଇ ତାର ସମ୍ପତ୍ତିକୁ ଆଉ ବୃଦ୍ଧି କରେ ନାହିଁ । ୬ । ପୁଣି—

ନିରୁତ୍ସାହଂ ନିରାନନ୍ଦଂ ନିର୍ବୀର୍ଯ୍ୟମରିନନ୍ଦନମ୍‌ ।
ମା ସ୍ମ ସୀମନ୍ତିନୀ କାଚିଜ୍ଜନୟେତ୍ ପୁତ୍ରମୀଦୃଶମ୍‌ । ୭ ।

ଉତ୍ସାହଶୂନ୍ୟ, ନିରାନନ୍ଦ, ଉଦାସୀନ ଶତ୍ରୁର ଆନନ୍ଦଦାୟକ ପୁତ୍ରକୁ ଯେପରି କୌଣସି ରମଣୀ ଜନ୍ମ ନଦିଏ । ୭ । କଥିତ ଅଛି—

ଅଲବ୍‌ଧଂ ଚୈବ ଲିପ୍‌ସେତ ଲବ୍‌ଧଂ ରକ୍ଷେଦବେକ୍ଷୟାତ୍ ।
ରକ୍ଷିତଂ ବର୍ଦ୍ଧୟେତ୍‌ ସମ୍ୟଗ୍‌ ବୃଦ୍ଧଂ ତୀର୍ଥେଷୁ ନିକ୍ଷିପେତ୍ । ୮ ।

ଉନ୍ନତିକାମୀ ପୁରୁଷପକ୍ଷରେ ଅଲବ୍‌ଧ ଧନକୁ ଲୋଭ କରିବା, ଲବ୍‌ଧ ଧନକୁ ଅପଚୟରୁ ରକ୍ଷା କରିବା, ରକ୍ଷିତ ଧନକୁ ବୃଦ୍ଧି କରିବା ଓ ବର୍ଦ୍ଧିତ ଧନକୁ ତୀର୍ଥରେ ବା ସତ୍ପାତ୍ରରେ ଦାନ କରିବା ଉଚିତ । ୮ ।

ଅପ୍ରାପ୍ତ ଧନକୁ ପାଇବାପାଇଁ ଇଚ୍ଛୁକ ବ୍ୟକ୍ତି ଧନକୁ ଋଣ-ଦେବାଦ୍ୱାରା ଧନପ୍ରାପ୍ତ ହୋଇଥାଏ । ରକ୍ଷା ନ କଲେ ଲବ୍‌ଧ ଧନ ମଧ୍ୟ ସ୍ୱତଃ ନଷ୍ଟ ହୋଇଯାଏ । ଏହାଛଡ଼ା ଯଦି ଧନକୁ ବୃଦ୍ଧି କରା ନ ଯାଏ, ତେବେ ଅଳ୍ପ ଅଳ୍ପ ବ୍ୟୟ କରୁଥିଲେ ମଧ୍ୟ ତାହା ଚକ୍ଷୁର

ଅଞ୍ଜନ ପରି ସରିଯାଏ । ପୁଣି ଉପଭୋଗ ନକଲେ ଧନ ନିଷ୍ପ୍ରୟୋଜନ । କଥିତ ଅଛି—

ଧନେନ କିଂ ଯୋ ନ ଦଦାତି ନାଶ୍ନୁତେ
ବଲେନ କିଂ ଯଶ୍ଚ ରିପୂନ୍ନ ବାଧତେ ।
ଶ୍ରୁତେନ କିଂ ଯୋ ନ ଚ ଧର୍ମମାଚରେତ୍
କିମାତ୍ମନା ଯୋ ନ ଜିତେନ୍ଦ୍ରିୟୋ ଭବେତ୍ । ୯ ।

ଯେଉଁ ଲୋକ ଧନକୁ ଦାନ କରେ ନାହିଁ, କିମ୍ବା ନିଜେ ଉପଭୋଗ କରେ ନାହିଁ, ତାର ଧନରେ କି ଫଳ ? ଯିଏ ଶତ୍ରୁକୁ ଜୟ କରେ ନାହିଁ ତାର ବଳରେ କି ଫଳ ? ଯିଏ ଶାସ୍ତ୍ରଜ୍ଞ ହୋଇ ଧର୍ମ ଆଚରଣ କରେ ନାହିଁ, ତାର ଶାସ୍ତ୍ରପାଠରେ କି ଲାଭ ? ଆଉ ଯେଉଁ ଲୋକ ଇନ୍ଦ୍ରିୟମାନଙ୍କୁ ଜୟ କରି ନ ଥାଏ, ତାର ଆତ୍ମାରେ କି ଲାଭ ? । ୯ । ଯେହେତୁ—

ଜଳବିନ୍ଦୁନିପାତେନ କ୍ରମଶଃ ପୂର୍ଯ୍ୟତେ ଘଟଃ ।
ସ ହେତୁଃ ସର୍ବବିଦ୍ୟାନାଂ ଧର୍ମସ୍ୟ ଚ ଧନସ୍ୟ ଚ । ୧୦ ।

ବିନ୍ଦୁ ବିନ୍ଦୁ ହୋଇ ଜଳ ପଡ଼ିବାଦ୍ୱାରା ଘଟ କ୍ରମଶଃ ପୂର୍ଣ୍ଣ ହୋଇଥାଏ । ସେହିପରି ସର୍ବପ୍ରକାର ବିଦ୍ୟା, ଧର୍ମ ଓ ଧନ କ୍ରମଶଃ ବୃଦ୍ଧି ପାଇଥାଏ । ୧୦ ।

ଦାନୋପଭୋଗରହିତା ଦିବସା ଯସ୍ୟ ଯାନ୍ତି ବୈ
ସ କର୍ମକାରଭସ୍ତ୍ରେବ ଶ୍ୱସନ୍ନପି ନ ଜୀବତି । ୧୧ ।

ଯେଉଁ ଲୋକ ଦାନ ଓ ଉପଭୋଗ ବିନା ଦିନ ପରେ ଦିନ କଟାଉଥାଏ, ସେ କମାରର ଭସ୍ତି ପରି ଶ୍ୱାସ ନେଉଥିଲେହେଁ ତାକୁ ଜୀବିତ ବୋଲି କୁହାଯାଇ ନପାରେ । ୧୧ ।

ଏହାପରେ ଚିନ୍ତା କରି ସେ (ବର୍ଦ୍ଧମାନ) ଗୋଟିଏ ଶକଟ ନାନାବିଧ ପଣ୍ୟଦ୍ରବ୍ୟରେ ପୂର୍ଣ୍ଣ କରି ତହିଁରେ ନନ୍ଦକ ଓ ସଞ୍ଜୀବକ ନାମକ ଦୁଇଟି ବୃଷଭ ଯୋଚି ବାଣିଜ୍ୟ ଉଦ୍ଦେଶ୍ୟରେ କାଶ୍ମୀର ଅଭିମୁଖରେ ବାହାରିଲେ । ପୁଣି—

ଅଞ୍ଜନସ୍ୟ କ୍ଷୟଂ ଦୃଷ୍ଟ୍ୱା ବଲ୍ମୀକସ୍ୟ ଚ ସଞ୍ଚୟମ୍ ।
ଅବନ୍ଧ୍ୟଂ ଦିବସଂ କୁର୍ଯ୍ୟାଦ୍ଦାନାଧ୍ୟୟନକର୍ମସୁ । ୧୨ ।

ଅଞ୍ଜନର କ୍ଷୟ ଓ ବଲ୍ମୀକର ସଞ୍ଚୟ ଦେଖି ପ୍ରତ୍ୟେକ ଦିବସକୁ ଦାନ, ଅଧ୍ୟୟନ ଓ ଧର୍ମକାର୍ଯ୍ୟଦ୍ୱାରା ସଫଳ କରିବା ଉଚିତ । ୧୨ ।

ଯେହେତୁ—

କୋଽତିଭାରଃ ସମର୍ଥାନାଂ
କିଂ ଦୂରଂ ବ୍ୟବସାୟିନାମ୍ ।
କୋ ବିଦେଶଃ ସବିଦ୍ୟାନାଂ
କଃ ପରଃ ପ୍ରିୟବାଦିନାମ୍ । ୧୩ ।

ଶକ୍ତିଶାଳୀ ଲୋକ ପକ୍ଷରେ ଗୁରୁଭାର କଅଣ ? ଅଧ୍ୟବସାୟୀ ଲୋକ ପକ୍ଷରେ ଦୂର କଅଣ ? ବିଦ୍ୱାନ୍ ଲୋକ ପକ୍ଷରେ ବିଦେଶ କଅଣ ? ମଧୁରଭାଷୀ ଲୋକ ପକ୍ଷରେ ପର କିଏ ? । ୧୩ । ଅର୍ଥାତ୍ ବଳିଷ୍ଠ ଲୋକ ଯେତେ ଗୁରୁଭାର ହେଲେ ସୁଦ୍ଧା ତାକୁ ବହନ କରେ । ଅଧ୍ୟବସାୟୀ ଲୋକ ଯେ କୌଣସି ଦୂର ସ୍ଥାନକୁ ଯିବାକୁ କୁଣ୍ଠିତ ହୁଏ ନାହିଁ । ବିଦ୍ୱାନ୍ ଲୋକ ପକ୍ଷରେ ସ୍ୱଦେଶ ଯେପରି, ବିଦେଶ ମଧ୍ୟ ସେହିପରି । ମଧୁରଭାଷୀ ଲୋକର କେହି ଅପ୍ରିୟ ନୁହନ୍ତି ।

ଏହାପରେ ଶକଟ ଯାଉଥିବା ସମୟରେ ସୁଦୁର୍ଗ ନାମକ ଅରଣ୍ୟରେ ସଞ୍ଜୀବକର ଜଙ୍ଘ ଭାଙ୍ଗି ଯିବାରୁ ସେ ତଳେ ପଡ଼ିଗଲା । ତାହାକୁ ଦେଖି ବର୍ଦ୍ଧମାନ ଚିନ୍ତା କଲେ—

କରୋତ୍ୟୁ ନାମ ମାନବୋ ବ୍ୟବସାୟମିତସ୍ତତଃ ।
ଫଳଂ ପୁନସ୍ତଦେବାସ୍ୟ ଯଦ୍‌ବିଧେର୍ମନସି ସ୍ଥିତମ୍ । ୧୪ ।

ମାନବ୍ଭ ଲୋକ ଯେତେଆଡ଼େ ଯେତେ ଉଦ୍ୟମ କରୁନା କାହିଁକି, ବିଧାତାଙ୍କ ମନରେ ଯାହା ଥାଏ, ଫଳରେ ତାହାହିଁ ହୁଏ । ୧୪ । କିନ୍ତୁ—

ବିସ୍ମୟଃ ସର୍ବଥା ହେୟଃ ପ୍ରତ୍ୟୂହଃ ସର୍ବକର୍ମଣାମ୍ ।
ତସ୍ମାଦ୍ ବିସ୍ମୟମୁତ୍ସୃଜ୍ୟ ସାଧ୍ୟେ ସିଦ୍ଧିର୍ବିଧୀୟତାମ୍ । ୧୫ ।

କାର୍ଯ୍ୟରେ ପ୍ରତିବନ୍ଧକ ଦେଖି ଚକିତ ହେବା ସର୍ବଥା ତ୍ୟାଗ-କରିବା ଉଚିତ । ଏହା ସକଳ କାର୍ଯ୍ୟର ଅନ୍ତରାୟ । ତେଣୁ ବିସ୍ମୟଭାବ ତ୍ୟାଗକରି କାର୍ଯ୍ୟରେ ସିଦ୍ଧିଲାଭ କରିବା ଆବଶ୍ୟକ ।୧୫।

ଏହିପରି ଚିନ୍ତା କରି ବର୍ଦ୍ଧମାନ ସଞ୍ଜୀବକକୁ ସେହିଠାରେ ଛାଡ଼ି ଦେଇ ନିଜେ ଧର୍ମପୁରନାମକ ଏକ ନଗରକୁ ଗଲେ ଓ ସେଠାରୁ ଗୋଟିଏ ହୃଷ୍ଟପୁଷ୍ଟ ବୃଷଭ ଆଣି ଶଗଡ଼ରେ ସଞ୍ଜୀବକ ପରିବର୍ତ୍ତରେ ଯୋଚି ଚାଲିଗଲେ । ତତ୍ପରେ ସଞ୍ଜୀବକ ଅତି କଷ୍ଟରେ ତିନୋଟି ପାଦରେ ଭରଦେଇ ଉଠିଲା ।

ନିମଗ୍ନସ୍ୟ ପୟୋରାଶୌ ପର୍ବତାତ୍ପତିତସ୍ୟ ଚ ।
ତକ୍ଷକେଣାପି ଦଷ୍ଟସ୍ୟ ଆୟୁର୍ମର୍ମାଣି ରକ୍ଷତି । ୧୬ ।

ଆୟୁଷ ଥିଲେ ସମୁଦ୍ରରେ ବୁଡ଼ି ଯାଉଥିବା ଲୋକର, ପର୍ବତରୁ ଖସି ପଡ଼ିଥିବା ଲୋକର, ତକ୍ଷକ ଦଂଶନ କରିଥିବା ଲୋକର ମଧ୍ୟ ପ୍ରାଣ ରକ୍ଷା ପାଇଥାଏ । ୧୬ ।

ନାକାଳେ ମ୍ରିୟତେ ଜନ୍ତୁର୍ବିଦ୍ଧଃ ଶରଶତୈରପି ।
କୁଶାଗ୍ରେଣୈବ ସଂସ୍ପୃଷ୍ଟଃ ପ୍ରାପ୍ତକାଳୋ ନ ଜୀବତି । ୧୭ ।

ମୃତ୍ୟୁକାଳ ଉପସ୍ଥିତ ହୋଇ ନ ଥିଲେ ପ୍ରାଣୀ ଶତଶତ ଶର-ଦ୍ୱାରା ବିଦ୍ଧ ହେଲେହେଁ ମରେ ନାହିଁ । କିନ୍ତୁ ମୃତ୍ୟୁକାଳ ଆସିଲେ ସେ ସାମାନ୍ୟ କୁଶାଗ୍ରର ସ୍ପର୍ଶରେ ମଧ୍ୟ ପ୍ରାଣ ହରାଏ; ରକ୍ଷା ପାଇ ପାରେ ନାହିଁ । ୧୭ ।

ଅରକ୍ଷିତଂ ତିଷ୍ଠତି ଦୈବରକ୍ଷିତଂ
ସୁରକ୍ଷିତଂ ଦୈବହତଂ ବିନଶ୍ୟତି ।
ଜୀବତ୍ୟନାଥୋଽପି ବନେ ବିସର୍ଜିତଃ
କୃତପ୍ରଯତ୍ନୋଽପି ଗୃହେ ନ ଜୀବତି । ୧୮ ।

ଯାହାକୁ ଅନ୍ୟ କେହି ରକ୍ଷା କରନ୍ତି ନାହିଁ, ତାକୁ ଦୈବ ରକ୍ଷାକରେ । କିନ୍ତୁ ଦୈବ ଯାହାକୁ ବିନାଶ କରେ ଅନ୍ୟମାନେ ଯେତେ ଚେଷ୍ଟାକଲେ ସୁଦ୍ଧା ତାର ପ୍ରାଣ ଯାଏ । ବନରେ ପରିତ୍ୟକ୍ତ ଶିଶୁ ଅନାଥ ହେଲେହେଁ ବଞ୍ଚିଯାଇଥାଏ; କିନ୍ତୁ ଗୃହରେ ଅତି ଯତ୍ନରେ ପ୍ରତିପାଳିତ ଶିଶୁ ବଞ୍ଚିପାରେ ନାହିଁ । ୧୮ ।

ଏହିପରି କିଛିକାଳ ଯିବାପରେ ସଞ୍ଜୀବକ ବନମଧ୍ୟରେ ଇଚ୍ଛାନୁସାରେ ଯଥେଷ୍ଟ ଭୋଜନ କରି ଭ୍ରମଣ କରିବା ଫଳରେ ତାହାର ଶରୀର ହୃଷ୍ଟପୁଷ୍ଟ ହୋଇଗଲା ଓ ସେ ଘୋର ଗର୍ଜନ କରି-ବାକୁ ଲାଗିଲା । ପିଙ୍ଗଳକ ନାମକ ଗୋଟିଏ ସିଂହ ଆପଣା ପରା-କ୍ରମରେ ଲବ୍‌ଧ ରାଜ୍ୟସୁଖ ଉପଭୋଗ କରି ସେହି ବନରେ ବାସ କରୁଥିଲା । କଥିତ ଅଛି—

ନାଭିଷେକୋ ନ ସଂସ୍କାରଃ ସିଂହସ୍ୟ କ୍ରିୟତେ ମୃଗୈଃ
ବିକ୍ରମାର୍ଜିତରାଜ୍ୟସ୍ୟ ସ୍ୱୟମେବ ମୃଗେନ୍ଦ୍ରତା । ୧୯ ।

ବନର (ମୃଗମାନେ) ଇତର ପ୍ରାଣୀମାନେ ସିଂହର ଅଭିଷେକ କରନ୍ତି ନାହିଁ କି ସଂସ୍କାର କରନ୍ତି ନାହିଁ । କିନ୍ତୁ ସିଂହ ନିଜ ପରା-

ସ୍ୱମ ବଳରେ ରାଜ୍ୟ ଲାଭ କରି ସ୍ୱୟଂ ରାଜା ହୋଇଯାଏ (ମୃଗେନ୍ଦ୍ର ବୋଲାଏ) । ୧୯ ।

ସେହି ପିଙ୍ଗଳକ ଏକଦା ପିପାସାତୁର ହୋଇ ଜଳପାନ ନିମନ୍ତେ ଯମୁନାତଟକୁ ଯାଇଥିଲା । ସେଠାରେ ସେ ଅଶ୍ରୁତପୂର୍ବ, ଅକାଳ ମେଘଗର୍ଜନ ସଦୃଶ ସଞ୍ଜୀବକର ଗର୍ଜନ ଶୁଣି ପାରିଲା । ତାହା ଶୁଣି ସେ ଜଳପାନ ନ କରି ଆଶ୍ଚର୍ଯ୍ୟାନ୍ୱିତ ହୋଇ ନିଜ ବାସ ସ୍ଥାନକୁ ଫେରି ଆସିଲା ଓ 'ଏବେ ଏ କି ଗର୍ଜନ' ବୋଲି ଚିନ୍ତା କରି ତୁନି ହୋଇ ବସିଲା ।

କରଟକ ଓ ଦମନକ ନାମରେ ମନ୍ତ୍ରୀପୁତ୍ରଦ୍ୱୟ ସିଂହକୁ ଏପରି ବସିଥିବାର ଦେଖିଲେ । ଦମନକ କରଟକକୁ କହିଲା, "ସଖେ କରଟକ, ରାଜା ଜଳପାନ କରିବାକୁ ଯାଉଥିଲେ, କିନ୍ତୁ ଜଳପାନ ନ କରି ଚକିତ ହୋଇ ଫେରିଆସି ତୁନି ହୋଇ ଏଠାରେ ବସିଅଛନ୍ତି କାହିଁକି ?" କରଟକ କହିଲା, "ମିତ୍ର ଦମନକ, ମୋ ମତରେ ତାଙ୍କର ସେବା କରିବା ଉଚିତ ନୁହେଁ । ଯଦି ତାହା ହୋଇଥାଏ ତେବେ ରାଜାଙ୍କ ଭୟାଦିର କାରଣ ଅନୁସନ୍ଧାନ କରିବା ଆମର କି ଦରକାର ? ରାଜା ବିନା ଦୋଷରେ ଆମ ଦୁହିଁଙ୍କୁ ଅପମାନିତ କରି ବହୁ ଦିନ ହେଲା କଷ୍ଟ ଦେଇ ଆସୁଅଛନ୍ତି । ଦେଖ—

ସେବୟା ଧନମିଚ୍ଛଦ୍ଭିଃ ସେବକୈଃ ପଶ୍ୟ ଯତ୍କୃତମ୍ ।
ସ୍ୱାତନ୍ତ୍ର୍ୟଂ ଯଚ୍ଛରୀରସ୍ୟ ମୂଢ଼ୈସ୍ତଦପି ହାରିତମ୍ । ୨୦ ।

ସେବାଦ୍ୱାରା ଯେଉଁମାନେ ଧନଲାଭର ଆଶାକରି କାର୍ଯ୍ୟ କରନ୍ତି, ସେବା ଫଳରେ ସେହି ମୂର୍ଖମାନେ ନିଜର ସ୍ୱାଧୀନତାଟିକି ମଧ୍ୟ ହରାନ୍ତି । ପୁଣି—

ଶୀତବାତାତପକ୍ଳେଶାନ୍ ସହନ୍ତେ ଯାନ୍ ପରାଶ୍ରିତାଃ ।
ତଦଂଶେନାପି ମେଧାବୀ ତପସ୍ତପ୍ତ୍ୱା ସୁଖୀ ଭବେତ୍ । ୨୧ ।

ପରାଶ୍ରିତ ସେବକମାନେ ଯେଉଁ ଶୀତ ପବନ ଓ ଆତପ-କ୍ଳେଶ ସହ୍ୟ କରନ୍ତି, ବୁଦ୍ଧିମାନ୍ ଲୋକ ସେହି କ୍ଳେଶର ଅଂଶମାତ୍ର ସହ୍ୟକରି ତପସ୍ୟା ଦ୍ୱାରା ସୁଖୀ ହୋଇପାରେ । ୨୧ । ପୁଣି—

ଏତାବଜ୍ଜନ୍ମସାଫଲ୍ୟଂ ଯଦନାୟତ୍ତବୃତ୍ତିତା
ଯେ ପରାଧୀନତାଂ ଯାତାସ୍ତେ ବୈ ଜୀବନ୍ତି, କେ ମୃତାଃ । ୨୨ ।

ଜୀବିକା ଅର୍ଜନ ପାଇଁ ଅନ୍ୟର ଅଧୀନ ନ ହେବାହିଁ ହେଉଛି ଏ ଜୀବନର ସଫଳତା । ଯେଉଁମାନେ ପରାଧୀନତା ସ୍ୱୀକାର କରି ବଞ୍ଚନ୍ତି; ସେମାନଙ୍କୁ ଜୀବିତ ବୋଲି କହିଲେ ମୃତ କିଏ ? ୨୨ । ପୁଣି—

ଏହି, ଗଚ୍ଛ, ପତୋତ୍ତିଷ୍ଠ,
ବଦ, ମୌନଂ ସମାଚର ।
ଏବମାଶାଗ୍ରହଗ୍ରସ୍ତୈ
କ୍ରୀଡ଼ନ୍ତି ଧନିନୋଽର୍ଥିଭିଃ । ୨୩ ।

ଆସ, ଯାଅ, ବସ, ଉଠ, କହ, ଚୁପ୍‌କର—ଏହିପରି ଆଦେଶ ଦେଇ ଦେଇ ଧନୀମାନେ ଆଶାଗ୍ରହଗ୍ରସ୍ତ ଯାଚକମାନଙ୍କ ସହିତ କ୍ରୀଡ଼ା କରୁଥାନ୍ତି । ୨୩ । ପୁଣି—

ଅବୁଧୈରର୍ଥଲାଭାୟ ପଣ୍ୟସ୍ତ୍ରୀଭିରିବ ସ୍ୱୟମ୍
ଆତ୍ମା ସଂସ୍କୃତ୍ୟ ସଂସ୍କୃତ୍ୟ ପରୋପକରଣୀକୃତଃ । ୨୪ ।

ମୂର୍ଖଲୋକେ ଧନପାଇଁ ବେଶ୍ୟାଭଳି ସୁସଜ୍ଜିତ ହୋଇ ନିଜକୁ ଅନ୍ୟର ଉପକାରରେ ଲଗାଇ ଥାଆନ୍ତି । ୨୪ । ଆହୁରି—

ଯା ପ୍ରକୃତ୍ୟୈବ ଚପଳା ନିପତତ୍ୟଶୁଚାବପି
ସ୍ୱାମିନୋ ବହୁମନ୍ୟନ୍ତେ ଦୃଷ୍ଟିଂ ତାମପି ସେବକାଃ । ୨୫ ।

ପ୍ରଭୁଙ୍କର ସ୍ୱଭାବତଃ ଚପଳ ଦୃଷ୍ଟି ଅପବିତ୍ର ସ୍ଥାନରେ ପଡ଼ିଲେ ମଧ୍ୟ ସେବକମାନେ ତାହାକୁ 'ମୋ ଉପରେ ପ୍ରଭୁଙ୍କର କୃପା ଦୃଷ୍ଟି' ବୋଲି ମନେ କରି କୃତାର୍ଥ ହୁଅନ୍ତି । ୨୫ । ପୁଣି—

ମୌନାନ୍ମୂର୍ଖଃ ପ୍ରବଚନପଟୁର୍ବାତୁଲୋ ଜଳ୍ପକୋବା
କ୍ଷାନ୍ତ୍ୟା ଭୀରୁର୍ଯଦି ନ ସହତେ ପ୍ରାୟଶୋ ନାଭିଜାତଃ ।
ଧୃଷ୍ଟଃ ପାର୍ଶ୍ୱେ ବସତି ନିୟତଂ ଦୂରତଶ୍ଚାପ୍ରଗଲ୍‌ଭଃ
ସେବାଧର୍ମଃ ପରମଗହନୋ ଯୋଗିନାମପ୍ୟଗମ୍ୟଃ । ୨୬ ।

ସେବକ ମୌନ ରହିଲେ ପ୍ରଭୁ ତାକୁ ମୂର୍ଖ ବୋଲି, କଥା କହିଲେ ତାକୁ ବାତୁଳ ବା ଜଳ୍ପକ ବୋଲି, କ୍ଷମା କଲେ ତାକୁ ଭୀରୁ ବୋଲି, ଅସହିଷ୍ଣୁ ହେଲେ ପ୍ରାୟଶଃ ଅକୁଳୀନ ବୋଲି, ସର୍ବଦା ପାଖରେ ରହିଲେ ଧୃଷ୍ଟ ବୋଲି, ଦୂରରେ ରହିଲେ ଲଜ୍ଜାଶୀଳ ବୋଲି ମନେ କରନ୍ତି । ତେଣୁ ସେବାଧର୍ମ ଅତି କଠିନ । ଯୋଗୀ-ମାନଙ୍କ ପକ୍ଷରେ ମଧ୍ୟ ଏହା ଦୁଃସାଧ୍ୟ । । ୨୬ ।

ପ୍ରଣମତ୍ୟୁନ୍ନତିହେତୋର୍ଜୀବିତହେତୋର୍ବିମୁଞ୍ଚତି ପ୍ରାଣାନ୍ ।
ଦୁଃଖୀୟତି ସୁଖହେତୋଃ କଃ ମୂଢ଼ଃ ସେବକାଦନ୍ୟଃ । ୨୭ ।

ସେବକ ବିନା ଅନ୍ୟ କେଉଁ ମୂର୍ଖ ନିଜର ଉନ୍ନତିପାଇଁ ପ୍ରଭୁ ନିକଟରେ ନତମସ୍ତକ ହେବ ? ଜୀବନରକ୍ଷା ପାଇଁ ପ୍ରାଣତ୍ୟାଗ କରିବ ? ସୁଖଲାଭ ପାଇଁ ଦୁଃଖଭୋଗ କରିବ ?" । ୨୭ ।

ଦମନକ କହିଲା, "ମିତ୍ର, ମନରେ ମଧ୍ୟ ଏପରି ଚିନ୍ତା କରିବା ଉଚିତ ନୁହେଁ । କାରଣ—

କଥଂ ନାମ ନ ସେବ୍ୟନ୍ତେ
ଯତ୍ନତଃ ପରମେଶ୍ୱରାଃ ।
ଅଚରେଣୈବ ଯେ ତୁଷ୍ଟାଃ
ପୂରୟନ୍ତି ମନୋରଥାନ୍ । ୨୮ ।

ଯେଉଁ ପ୍ରଭୁମାନେ ପ୍ରସନ୍ନ ହେଲେ ଅବିଳମ୍ବେ ସକଳ କାମନା ପୂରଣ କରିପାରନ୍ତି, ସେମାନଙ୍କୁ ସେବକ କାହିଁକି ଅତି ଯତ୍ନରେ ସେବା ନ କରିବ ? ୨୮ । ଆହୁରି ମଧ୍ୟ ଦେଖ—

କୁତଃ ସେବାବିହୀନାନାଂ ଚାମରୋଦ୍‌ଧୂତସମ୍ପଦଃ ।
ଉଦ୍‌ଦଣ୍ଡଧବଳଚ୍ଛତ୍ରଂ ବାଜିବାରଣବାହିନୀ । ୨୯ ।

ପ୍ରଭୁଙ୍କର ସେବା ନ କଲେ ଭୃତ୍ୟ କାହୁଁ ଚାମରଚାଳନର ସୁଖ, ଯାଦଣ୍ଡଯୁକ୍ତ ଶ୍ୱେତଛତ୍ର, ଅଶ୍ୱ-ହସ୍ତୀ-ସେନା ଏ ସବୁ ଉପଭୋଗ କରିବ ?" ୨୯ ।

କରଟକ କହିଲା, "ତଥାପି ରାଜାଙ୍କ ବ୍ୟାପାରରେ ଆମର କଅଣ ଅଛି ? କାରଣ ଅକରଣୀୟ କାର୍ଯ୍ୟ କରିବା ଉଚିତ ନୁହେଁ । ଶୁଣ—

ଅବ୍ୟାପାରେଷୁ ବ୍ୟାପାରଂ ଯୋ ନରଃ କର୍ତ୍ତୁମିଚ୍ଛତି ।
ସ ଭୂମୌ ନିହତଃ ଶେତେ କୀଲୋତ୍ପାଟୀବ ବାନରଃ । ୩୦ ।

ଯେଉଁ ଲୋକ ଅକରଣୀୟ କାର୍ଯ୍ୟ କରିବାକୁ ଯାଏ, କୀଳ ଉପାଡ଼ିବା ମର୍କଟସଦୃଶ ସେ ପ୍ରାଣ ହରାଏ ।" ୩୦ ।

ଦମନକ ପଚାରିଲା, "ସେ କଥା କଅଣ ?"

କରଟକ କହିବାକୁ ଲାଗିଲା ।

## କଥା-୧

ମଗଧ ଦେଶରେ ଧର୍ମାରଣ୍ୟ ନିକଟବର୍ତ୍ତୀ ଏକ ସ୍ଥାନରେ ଶୁଭଦତ୍ତ ନାମକ ଜଣେ କାୟସ୍ଥ ଗୋଟିଏ ବୌଦ୍ଧବିହାର ନିର୍ମାଣ କରିବାକୁ ଆରମ୍ଭ କଲେ। ସେଠାରେ କରତରେ କିଛିଦୂର ପର୍ଯ୍ୟନ୍ତ ଚିରା ହୋଇଥିବା ଗୋଟିଏ କାଠଗଡ଼ର ଫାଙ୍କରେ ବଢ଼େଇ ଗୋଟିଏ କିଳା ମାରି ଚାଲି ଯାଇଥିଲା। ଦଳେ ବାନର କ୍ରୀଡ଼ା କରୁ-କରୁ ସେଠାରେ ଉପସ୍ଥିତ ହେଲେ। କାଳହାରି ପ୍ରେରିତ ହେଲାପରି ଗୋଟିଏ ବାନର ଦୁଇ ହାତରେ ସେହି କିଳାକୁ ଧରି ବସିଗଲା। କାଠର ଦୁଇ ଫାଳ ମଧ୍ୟରେ ଥିବା ଫାଙ୍କରେ ତାହାର ଅଧୋଭାଗ ରହିଥିଲା। ଏହାପରେ ଚପଳ ସ୍ୱଭାବବଶତଃ ସେ ଖୁବ୍ ଜୋର୍‌ରେ ସେହି କିଳାକୁ ଟାଣିଲା। କିଳାଟି ବାହାରି ପଡ଼ିବାରୁ ତାହାର ଅଧୋଭାଗ ଦୁଇ ଫାଳ କାଠ ମଧ୍ୟରେ ଚିପି ହୋଇଗଲା ଓ ଏହା ଫଳରେ ସେ ପ୍ରାଣ ହରାଇଲା।

ସେଥିପାଇଁ ମୁଁ କହୁଥିଲି ଯେ ଅକରଣୀୟ କାର୍ଯ୍ୟ କରିବା ଉଚିତ ନୁହେଁ। ତଥାପି ପ୍ରଭୁଙ୍କ କାର୍ଯ୍ୟପ୍ରତି ସେବକ ଦୃଷ୍ଟି ଦେବା ଉଚିତ। କରଟକ କହିଲା, "ଯେଉଁ ପ୍ରଧାନ ମନ୍ତ୍ରୀ ସକଳ ଅଧିକାରରେ ନିଯୁକ୍ତ, ସେ ତାହା କରନ୍ତୁ। ଆମେ ସାମାନ୍ୟ ସେବକ; ଆମ ପକ୍ଷରେ ଅନ୍ୟର ଅଧିକାର ବିଷୟରେ ଚର୍ଚ୍ଚା କରିବା ଅନୁଚିତ। ଦେଖ—

ପରାଧିକାରଚର୍ଚ୍ଚାଂ ଯଃ କୁର୍ଯ୍ୟାତ୍ ସ୍ୱାମିହିତେଚ୍ଛୟା
ସ ବିଷୀଦତି ଚୀତ୍‌କାରାଦ୍ ଗର୍ଦ୍ଦଭସ୍ତାଡ଼ିତୋ ଯଥା ।୩୧।

ପ୍ରଭୁଙ୍କର ହିତ କାମନା କରି ଯିଏ ଅନ୍ୟର ଅଧିକାର ବିଷୟରେ ଚର୍ଚ୍ଚା କରେ, ସେ ଗର୍ଦ୍ଦଭ ଚୀତ୍‌କାର କରିବା ହେତୁରୁ ପ୍ରାଣ ହରାଇଲା ପରି ଦୁଃଖ ଭୋଗ କରେ। ୩୧।

ଦମନକ ପଚାରିଲା—ସେ କଥା କଅଣ ? କରଟକ କହିଲା—

## କଥା-୨

ବାରାଣସୀ ନଗରୀରେ କର୍ପୂରପଟକ ନାମରେ ଜଣେ ରଜକ ଥିଲା । ସେ ଦିନେ ରାତିରେ ଗାଢ଼ ନିଦରେ ଶୋଇଥିଲା । ଏହାପରେ ତାହା ଘରେ ଜିନିଷ ଚୋରାଇବା ପାଇଁ ଗୋଟାଏ ଚୋର ପଶିଲା । ରଜକର ଅଗଣାରେ ତାର ଗଧଟି ବନ୍ଧା ହୋଇଥିଲା । କୁକ୍କୁରଟିଏ ମଧ୍ୟ ସେହି ଅଗଣାରେ ରହିଥିଲା । ଗଧ କୁକ୍କୁରକୁ କହିଲା, "ମିତ୍ର, ଯେଏ ତ ତୁମର କାମ । ଖୁବ୍ ଜୋର୍‌ରେ ଶବ୍ଦ କରି ପ୍ରଭୁଙ୍କୁ ଉଠାଇ ଦେଉନାହଁ କାହିଁକି ?" କୁକ୍କୁର କହିଲା, "ଭଦ୍ର, ମୋର କାମ ବିଷୟରେ ତୁମର ଚିନ୍ତା କରିବା ଦରକାର ନାହିଁ । ତୁମେ କଅଣ ଜାଣନାହିଁ ଯେ ମୁଁ ତାଙ୍କର ଘରକୁ ଦିନରାତି ଜଗି ରହିଛି ? ଏହା ଫଳରେ ଚୌରିଦିଭୟରହିତ ହୋଇ ସେ ମୋର ଆବଶ୍ୟକତା ବୁଝୁନାହାନ୍ତି । ତେଣୁ ସେ ଏବେ ମୋତେ ଆହାର ଦେବାକୁ କୁଣ୍ଠିତ । କାରଣ କିଛି କ୍ଷତି ନ ଦେଖିଲେ ସ୍ୱାମୀ ସେବକପ୍ରତି ଆଦର ଦେଖାନ୍ତି ନାହିଁ ।" ଗର୍ଦ୍ଦଭ କହିଲା, "ଆରେ ବର୍ବର ( ଅଧମ ) ଶୁଣ୍—

ଯାଚତେ କାର୍ଯ୍ୟକାଳେ ଯଃ
ସ କିଂ ଭୃତ୍ୟଃ ସ କିଂ ସୁହୃତ୍

ଯେଉଁ ସେବକ ଠିକ୍ କାର୍ଯ୍ୟ ପଡ଼ିଲାବେଳେ କିଛି ମାଗି ବସେ ସେ କି ସେବକ ବା କି ମିତ୍ର ?" କୁକ୍କୁର କହିଲା—

ଭୃତ୍ୟାନ୍ ସମ୍ଭାବୟେଦ୍ ଯସ୍ତୁ
କାର୍ଯ୍ୟକାଳେ ସ କିଂ ପ୍ରଭୁଃ ? ୩୨ ।

ଯେଉଁ ପ୍ରଭୁ କେବଳ କାମ ପଡ଼ିଲାବେଳେ ଭୃତ୍ୟକୁ କଥା କହେ, ସେ କି ପ୍ରଭୁ ? ୩୨ । ଯେହେତୁ—

ଆଶ୍ରିତାନାଂ ଭୃତୌ ସ୍ୱାମୀସେବାୟାଂ ଧର୍ମସେବନେ
ପୁତ୍ରସ୍ୟୋତ୍ପାଦନେ ଚୈବ ନ ସନ୍ତି ପ୍ରତିହସ୍ତକାଃ । ୩୩ ।

ଆଶ୍ରିତ ଲୋକଙ୍କୁ ପାଳିବାରେ, ସ୍ୱାମୀସେବାରେ, ଧର୍ମାଚରଣରେ, ସନ୍ତାନ ଉତ୍ପାଦନରେ ପ୍ରତିନିଧି ରହି ନ ପାରନ୍ତି; ଅର୍ଥାତ୍ ଏ ସବୁ କାର୍ଯ୍ୟ ନିଜେହିଁ କରିବାକୁ ହୁଏ । ୩୩ ।

ତହୁଁ ଗର୍ଦ୍ଦଭ କହିଲା, "ରେ ପାପିଷ୍ଠ, ବିପଦ କାଳରେ ତୁ ସ୍ୱାମୀଙ୍କ କାର୍ଯ୍ୟରେ ଅବହେଳା କରୁଛୁ ! ଆଚ୍ଛା, ଯାହା ହେଉ, ସ୍ୱାମୀ ଯେପରି ଜାଗି ଉଠିବେ ମୁଁ ତହିଁର ଉପାୟ କରିବି । କାରଣ—

ପୃଷ୍ଠତଃ ସେବୟେଦର୍କଂ ଜଠରେଣ ହୁତାଶନମ୍
ସ୍ୱାମିନଂ ସର୍ବଭାବେନ ପରଲୋକମମାୟୟା । ୩୪ ।

ସୂର୍ଯ୍ୟସେବା ପିଠିରେ କରିବାକୁ ହୁଏ; ଅଗ୍ନିସେବା ଉଦରଦ୍ୱାରା କରିବାକୁ ହୁଏ; କିନ୍ତୁ ପ୍ରଭୁସେବା ସବୁ ପ୍ରକାରେ କରିବା ଉଚିତ; ତଥା ମାୟାତ୍ୟାଗକରି ପରଲୋକର ସେବା କରିବା ଉଚିତ । ଅର୍ଥାତ୍ ସୂର୍ଯ୍ୟଙ୍କୁ ପିଠି କରି ଖରା ପୁହାଇବ; ଅଗ୍ନିକୁ ଆଗରେ ରଖି ଉତ୍ତାପ ଭୋଗ କରିବ; ଦେହ, ମନ ଓ ପ୍ରାଣ ଦେଇ ପ୍ରଭୁଙ୍କର ସେବା କରିବ ଓ ପରଲୋକରେ ମୁକ୍ତି ପାଇଁ ମାୟା ତ୍ୟାଗ କରିବ ।" ୩୪ ।

ଏହା କହି ଗର୍ଦ୍ଦଭ ଚୀତ୍କାର କରି ଉଠିଲା । ସେହି ଚୀତ୍କାରରେ ରଜକ ନିଦରୁ ଉଠି ଗର୍ଦ୍ଦଭକୁ ଲଗୁଡ଼ରେ ପ୍ରହାର କଲା । ଏହି ପ୍ରହାର ଫଳରେ ଗର୍ଦ୍ଦଭର ମୃତ୍ୟୁ ଘଟିଲା । ସେହି ହେତୁରୁ

ମୁଁ କହୁଥିଲି ଯେ ପରାଧିକାର ଚର୍ଚ୍ଚା ଉଚିତ ନୁହେଁ । ଦେଖ, ପଶୁମାନଙ୍କୁ ଅନ୍ୱେଷଣ କରିବା ହେଉଛି ଆମର କାର୍ଯ୍ୟ । ଆମର ସେହି କାର୍ଯ୍ୟ କରିବା ଆବଶ୍ୟକ । ( ବିମର୍ଷ ହୋଇ ) କିନ୍ତୁ ଆଜି ସେ କାର୍ଯ୍ୟ ମଧ୍ୟ ଦରକାର ନାହିଁ । କାରଣ ଆମ ଦୁହିଙ୍କର ଭୋଜନରୁ ଯେତିକି ଅବଶିଷ୍ଟ ଅଛି, ସେତିକି ଯଥେଷ୍ଟ ହେବ ।"

ଦମନକ କ୍ରୁଦ୍ଧ ହୋଇ କହିଲା, "ତୁମେ ତେବେ କଅଣ କେବଳ ଭୋଜନ ପାଇବା ସକାଶେ ରାଜସେବା କରୁଛ ? ତୁମେ ଯାହା କହିଲ, ତାହା ଅନୁଚିତ । କାରଣ—

ସୁହୃଦାମୁପକାରକାରଣାଦ୍
ଦ୍ୱିଷତାମପ୍ୟପକାରକାରଣାତ୍ ।
ନୃପସଂଶ୍ରୟ ଇଷ୍ୟତେ ବୁଧୈ-
ର୍ଜଠରଂ କୋ ନ ବିଭର୍ତ୍ତି କେବଳମ୍ । ୩୫ ।

ବୁଦ୍ଧିମାନ୍ ଲୋକ କେବଳ ବନ୍ଧୁମାନଙ୍କର ଉପକାର ନିମନ୍ତେ ଓ ଶତ୍ରୁମାନଙ୍କର ଅପକାର ନିମନ୍ତେ ରାଜାଙ୍କର ଆଶ୍ରୟ ନେଇଥାନ୍ତି । ଜଗତରେ କିଏ ଅବା କେବଳ ଉଦରପୂରଣ କରୁନାହିଁ ? ୩୫ ।

ଜୀବିତେ ଯସ୍ୟ ଜୀବନ୍ତି ବିପ୍ରା ମିତ୍ରାଣି ବାନ୍ଧବାଃ ।
ସଫଳଂ ଜୀବିତଂ ତସ୍ୟ ଆତ୍ମାର୍ଥେ କୋ ନ ଜୀବତି । ୩୬ ।

ଯାହାଙ୍କର ଜୀଇବା ହେତୁ ବିପ୍ର, ମିତ୍ର ଓ ବାନ୍ଧବମାନେ ଜୀଇ ରହନ୍ତି, କେବଳ ସେଇମାନଙ୍କର ଜୀବନ ସାର୍ଥକ । ତା ହୋଇ ନଥିଲେ ଆପଣା ପାଇଁ କିଏ ଅବା ଜୀଇ ରହୁନାହିଁ । ୩୬ ।

ପୁଣି—

ଯସ୍ମିନ୍ ଜୀବତି ଜୀବନ୍ତି ବହବଃ ସ ତୁ ଜୀବତୁ ।
କାକୋଽପି କିଂ ନ କୁରୁତେ ଚଞ୍ଚ୍ୱା ସୋଦରପୂରଣମ୍ । ୩୭ ।

ଯାହାଙ୍କର ବଞ୍ଚି ରହିବା ଫଳରେ ବହୁଲୋକ ଜୀବନ ଧାରଣ କରନ୍ତି, ପ୍ରକୃତରେ ତାଙ୍କର ଜୀବନ ସଫଳ । ତା ନ ହେଲେ କାକ ମଧ୍ୟ ଚଞ୍ଚୁ ସାହାଯ୍ୟରେ କଅଣ ଉଦରପୂରଣ କରେ ନାହିଁ ? ୩୭ । ଦେଖ—

ପଞ୍ଚଭିର୍ଯାତି ଦାସତ୍ୱଂ ପୁରାଣୈଃ କୋଽପି ମାନବଃ
କୋଽପି ଲକ୍ଷୈଃ କୃତୀ କୋଽପି ଲକ୍ଷୈରପି ନ ଲଭ୍ୟତେ । ୩୮ ।

କେହି ପାଞ୍ଚ ମୁଦ୍ରା ପାଇଁ ଦାସତ୍ୱ ସ୍ୱୀକାର କରେ, କେହି ଅବା ଲକ୍ଷେ ମୁଦ୍ରା ପାଇଁ ଦାସତ୍ୱ ଗ୍ରହଣ କରେ । କିନ୍ତୁ ଅନ୍ୟ କେହି କୃତୀ ପୁରୁଷ ଲକ୍ଷ ଲକ୍ଷ ମୁଦ୍ରା ବିନିମୟରେ ମଧ୍ୟ ଦାସତ୍ୱ ସ୍ୱୀକାର କରେ ନାହିଁ । ୩୮ । ପୁଣି—

ମନୁଷ୍ୟଜାତୌ ତୁଲ୍ୟାୟାଂ ଭୃତ୍ୟତ୍ୱମତିଗର୍ହିତମ୍ ।
ପ୍ରଥମୋ ଯୋ ନ ତତ୍ରାପି ସ କିଂ ଜୀବତ୍ସୁ ଗଣ୍ୟତେ ? ୩୯ ।

ମନୁଷ୍ୟ ଜାତି ଭିତରେ ନିଜ ସମାନ ବ୍ୟକ୍ତିର ଦାସତ୍ୱ କରିବା ଏକାନ୍ତ ନିନ୍ଦନୀୟ । ଏପରି ଦାସତ୍ୱରେ ମଧ୍ୟ ଯଦି ଲୋକକୁ ପ୍ରଥମ ସ୍ଥାନ ନ ମିଳେ ତେବେ ସେ କଅଣ ଜୀବିତ ଲୋକଙ୍କ ମଧ୍ୟରେ ଗଣ୍ୟ ହୋଇପାରେ ? ୩୯ । ଆହୁରି କଥିତ ଅଛି—

ବାଜିବାରଣଲୋହାନାଂ କାଷ୍ଠପାଷାଣବାସସାମ୍ ।
ନାରୀପୁରୁଷତୋୟାନାମନ୍ତରଂ ମହଦନ୍ତରମ୍ । ୪୦ ।

ଅଶ୍ୱ, ହସ୍ତୀ, ଲୌହ, କାଷ୍ଠ, ପାଷାଣ, ବସ୍ତ୍ର, ନାରୀ, ପୁରୁଷ ଓ ଜଳ ମଧ୍ୟରେ ମହାନ୍ ପାର୍ଥକ୍ୟ ଅଛି । ୪୦ । ପୁଣି ସ୍ୱଳ୍ପବିତ୍ତରେ କ୍ଷୁଦ୍ର ବସ୍ତୁ ମଧ୍ୟ ବଡ଼ ବୋଲି ମନେ ହୋଇଥାଏ ।

ସ୍ୱଳ୍ପସ୍ନାୟୁବସାବଶେଷମଳିନଂ
ନିର୍ମାଂସମପ୍ୟସ୍ଥିକଂ
ଶ୍ୱା ଲବ୍‌ଧ୍ୱା ପରିତୋଷମେତି ନ ଭବେ-
ତ୍ତସ୍ୟ କ୍ଷୁଧଃ ଶାନ୍ତୟେ
ସିଂହୋ ଜମ୍ବୁକମଙ୍କମାଗତମପି
ତ୍ୟକ୍ତ୍ୱା ନିହନ୍ତି ଦ୍ୱିପଂ
ସର୍ବଃ କୃଚ୍ଛ୍ରଗତୋଽପି ବାଞ୍ଛତି ଜନଃ
ସତ୍ତ୍ୱାନୁରୂପଂ ଫଳମ୍ । ୪୧ ।

କୁକ୍‌କୁର ସାମାନ୍ୟ ସ୍ନାୟୁ ଚର୍ବି ଲଗିଥିବା ମାଂସଶୂନ୍ୟ ହାଡ଼ ପାଇଲେ ମଧ୍ୟ ସନ୍ତୁଷ୍ଟ ହୁଏ; ଯଦ୍ୟପି ସେଥିରେ ତାର କ୍ଷୁଧାର ଶାନ୍ତି ହୁଏ ନାହିଁ । କିନ୍ତୁ ସିଂହ କୋଳକୁ ଆସିଥିବା ଶୃଗାଳକୁ ମଧ୍ୟ ତ୍ୟାଗ କରି ହସ୍ତୀକୁ ବଧ କରିଥାଏ; କାରଣ କଷ୍ଟକର ହେଲେ ସୁଦ୍ଧା ଲୋକ ନିଜର ପରାକ୍ରମ ଅନୁରୂପ ଫଳ ପାଇବାକୁ ଇଚ୍ଛା କରିଥାଏ । ୪୧ ।

ପୁଣି ସେବ୍ୟ ଓ ସେବକ ଭିତରେ ଥିବା ପ୍ରଭେଦକୁ ବିଚାର କର ।

ଲାଙ୍ଗୁଲଚାଳନମଧଶ୍ଚରଣାବପାତଂ
ଭୂମୌ ନିପତ୍ୟ ବଦନୋଦରଦର୍ଶନଂ ଚ
ଶ୍ୱା ପିଣ୍ଡଦସ୍ୟ କୁରୁତେ ଗଜପୁଙ୍ଗବସ୍ତୁ
ଧୀରଂ ବିଲୋକୟତି ଚାଟୁଶତୈଶ୍ଚ ଭୁଙ୍‌କ୍ତେ । ୪୨ ।

କୁକ୍‌କୁର ଅନ୍ନଦାତା ପ୍ରଭୁ ଆଗରେ ନିଜର ଲାଙ୍ଗୁଳକୁ ହଲାଏ, ତାର ପାଦତଳେ ଲୋଟିଯାଏ, ଭୂଇଁରେ ଗଡ଼ି ମୁହଁ ଓ ପେଟ ଦେଖାଏ; କିନ୍ତୁ ଗଜରାଜ ତାର ପ୍ରଭୁକୁ ଗମ୍ଭୀରଭାବରେ ଚାହିଁ ରହେ

ଓ ଶତ ବୃଷ୍ଟ ବାକ୍ୟ ପରେ ସ୍ୱାମିଦତ୍ତ ଖାଦ୍ୟ ଭକ୍ଷଣ କରେ । ୪୨ ।
ପୁଣି—

ଯଜ୍ଜୀବ୍ୟତେ କ୍ଷଣମପି ପ୍ରଥିତଂ ମନୁଷ୍ୟୈ-
ର୍ବିଜ୍ଞାନବିକ୍ରମଯଶୋଭିରଭଜ୍ୟମାନମ୍ ।
ତନ୍ନାମ ଜୀବିତମିହ ପ୍ରବଦନ୍ତି ତଜ୍ଜ୍ଞାଃ
କାକୋଽପି ଜୀବତି ଚିରାୟ ବଳିଂ ଚ ଭୁଙ୍କ୍ତେ । ୪୩ ।

ଯେଉଁ ଲୋକ ଜ୍ଞାନ, ପରାକ୍ରମ ଓ ଯଶ ଦ୍ୱାରା ପ୍ରସିଦ୍ଧ ହୋଇ କ୍ଷଣମାତ୍ର ଜୀବିତ ରହେ, ବିଦ୍ୱାନ୍ ଲୋକେ ତାକୁ ହିଁ ଜୀବିତ ବୋଲି କହନ୍ତି । କାକ ଦୀର୍ଘକାଳ ବଞ୍ଚି ରହି କେବଳ ବଳି (ଉଚ୍ଛିଷ୍ଟ) ଭୋଜନ କରିଥାଏ । ୪୩ । ପୁଣି—

ଯୋ ନାତ୍ମଜେ ନ ଚ ଗୁରୌ ନ ଚ ଭୃତ୍ୟବର୍ଗେ
ଦୀନେ ଦୟାଂ ନ କୁରୁତେ ନ ଚ ବନ୍ଧୁବର୍ଗେ ।
କିଂ ତସ୍ୟ ଜୀବିତଫଳେନ ମନୁଷ୍ୟଲୋକେ
କାକୋଽପି ଜୀବତି ଚିରାୟ ବଳିଂ ଚ ଭୁଙ୍କ୍ତେ । ୪୪ ।

ଯେଉଁ ଲୋକ ପୁତ୍ରପ୍ରତି, ଗୁରୁଙ୍କ ପ୍ରତି, ଭୃତ୍ୟମାନଙ୍କ ପ୍ରତି, ଦରିଦ୍ର ପ୍ରତି, ବନ୍ଧୁମାନଙ୍କ ପ୍ରତି ଦୟା ପ୍ରକାଶ ନ କରେ, ତାର ଜୀବନରେ କି ଫଳ ? କାକ ମଧ୍ୟ ବଳି (ଉଚ୍ଛିଷ୍ଟ) ଭକ୍ଷଣ କରି ଦୀର୍ଘକାଳ ଜୀବନ ଧାରଣ କରିଥାଏ । ୪୪ । ପୁନଶ୍ଚ—

ଅହିତହିତବିଚାରଶୂନ୍ୟବୁଦ୍ଧେଃ
ଶ୍ରୁତିସମୟୈର୍ବହୁଭିସ୍ତିରସ୍କୃତସ୍ୟ ।
ଉଦରଭରଣମାତ୍ରକେବଳେଚ୍ଛୋଃ
ପୁରୁଷପଶୋଶ୍ଚ ପଶୋଶ୍ଚ କୋ ବିଶେଷଃ । ୪୫ ।

ସ୍ୱତୋହ୍ନତ ବଗୁରଶୂନ୍ୟ, ଶାସ୍ତ୍ରବହ୍ନତ ଆତ୍ମରହୀନ, କେବଳ ଉଦରପୋଷଣାର୍ଥୀ ମନୁଷ୍ୟରୂପୀ ପଶୁ ଓ ପଶୁ ମଧ୍ୟରେ କି ପ୍ରଭେଦ ଅଛି ?" ୪୫ ।

କରଟକ କହିଲା, "ଆମେ ଦୁହେଁ ତ ପ୍ରଧାନ ନୋହୁ । ତେଣୁ ଆମମାନଙ୍କର ସେ କଥା ବିଚାରିବା କି ଦରକାର ?" ଦମନକ କହିଲା, "ବହୁ ଦିନର ଚେଷ୍ଟା ଫଳରେ ଅମାତ୍ୟ ପ୍ରଧାନ ବା ଅପ୍ରଧାନ ପଦ ପାଇଥାଏ । ଯେହେତୁ—

ନ କସ୍ୟଚିତ୍ କଶ୍ଚିଦିହ ସ୍ୱଭାବାଦ୍-
ଭବନ୍ତ୍ୟୁଦାରୋଽଭିମତଃ ଖଳୋ ବା ।
ଲୋକେ ଗୁରୁତ୍ୱଂ ବିପରୀତତାଂ ବା
ସ୍ୱଚେଷ୍ଟିତାନ୍ୟେବ ନରଂ ନୟନ୍ତି । ୪୬ ।

କୌଣସି ବ୍ୟକ୍ତି କେବଳ ନିଜ ସ୍ୱଭାବଗୁଣରୁ କାହାପ୍ରତି ଉଦାର ଓ ପ୍ରିୟ ହୋଇ ନ ଥାଏ କିମ୍ବା ଖଳ ହୋଇ ନ ଥାଏ; ପରନ୍ତୁ ତାହାର କାର୍ଯ୍ୟହିଁ ତାକୁ ଗୌରବ ଅଥବା ହୀନତା ଦେଇଥାଏ । ୪୬ । ପୁଣି—

ଆରୋପ୍ୟତେ ଶିଳା ଶୈଳେ ଯତ୍ନେନ ମହତା ଯଥା ।
ନିପାତ୍ୟତେ କ୍ଷଣେନାଧସ୍ତଥାତ୍ମା ଗୁଣଦୋଷୟୋଃ । ୪୭ ।

ଯେପରି ପ୍ରସ୍ତରଖଣ୍ଡକୁ ବହୁକଷ୍ଟରେ ଶୈଳ ଉପରକୁ ଉଠାଇ ସ୍ଥାପନ କରାଯାଏ, କିନ୍ତୁ ମୁହୂର୍ତ୍ତକରେ ତଳକୁ ପକାଇ ଦିଆଯାଏ, ସେହିପରି ଆତ୍ମା ବହୁକଷ୍ଟରେ ଗୁଣ ଲାଭ କରେ କିନ୍ତୁ କ୍ଷଣେକରେ ଦୋଷଯୁକ୍ତ ହୁଏ । ୪୭ ।

ଯାତ୍ୟଧୋଽଧଃ ବ୍ରଜତ୍ୟୁଚ୍ଚୈର୍ନରଃ ସ୍ୱୈରେବ କର୍ମଭିଃ ।
କୂପସ୍ୟ ଖନିତା ଯଦ୍‌ବତ୍ ପ୍ରାକାରସ୍ୟେବ କାରକଃ । ୪୮ ।

ମନୁଷ୍ୟ ନିଜର କାର୍ଯ୍ୟଦ୍ୱାରା କୂପଖନନକାରୀ ପରି ନିମ୍ନରୁ ନିମ୍ନକୁ ଯାଇଥାଏ ଅଥବା ପ୍ରାଚୀରନିର୍ମାଣକାରୀ ପରି ଉତ୍ତରୋତ୍ତର ଉପରକୁ ଉଠିଥାଏ । ୪୮ ।

ତେଣୁ ହେ ଭଦ୍ର ? ପ୍ରତ୍ୟେକର ଆତ୍ମା ନିଜର ପ୍ରଯତ୍ନାଧୀନ ।'' କରଟକ କହିଲା, ''ତାହାହେଲେ ତୁମେ କଅଣ କହୁଛ ?'' ଦମନକ କହିଲା, ''ଆମର ପ୍ରଭୁ ପିଙ୍ଗଳକ କୌଣସି କାରଣରୁ ଭୀତ ହୋଇ ଫେରିଆସି ବସିଛନ୍ତି ।'' କରଟକ କହିଲା, '' ତବେ ଏଥିର ଉଦ୍ଦେଶ୍ୟ କଅଣ ଜାଣିଛ ?'' ଦମନକ କହିଲା, ''ଏଥିରେ ଅଜଣା କଅଣ ରହିଲା ? କଥିତ ଅଛି—

ଉଦୀରିତୋଽର୍ଥଃ ପଶୁନାପି ଗୃହ୍ୟତେ
ହୟାଶ୍ଚ ନାଗାଶ୍ଚ ବହନ୍ତି ଦେଶିତାଃ ।
ଅନୁକ୍ତମପ୍ୟୂହତି ପଣ୍ଡିତୋ ଜନଃ
ପରେଙ୍ଗିତଜ୍ଞାନଫଳା ହି ବୁଦ୍ଧୟଃ । ୪୯ ।

ଯାହା କୁହାଯାଏ, ତାର ଅର୍ଥ ପଶୁ ମଧ୍ୟ ବୁଝିପାରେ । ଆରୋହୀର ଆଦେଶକୁ ଘୋଡ଼ା ଓ ହାତୀ ବୁଝିପାରନ୍ତି । କୁହାଯାଇ ନଥିଲେ ମଧ୍ୟ ପଣ୍ଡିତମାନେ କଥାର ଉଦ୍ଦେଶ୍ୟ ଅନୁମାନ କରିପାରନ୍ତି । କିନ୍ତୁ ଅନ୍ୟମାନଙ୍କର ଇଙ୍ଗିତ ( ମାନସିକ ଭାବ ) ବୁଝିପାରିବା ହେଉଛି ବୁଦ୍ଧିର ଫଳ । ୪୯ ।

ଆକାରୈରିଙ୍ଗିତୈର୍ଗତ୍ୟା ଚେଷ୍ଟୟା ଭାଷଣେନ ଚ ।
ନେତ୍ରବକ୍ତ୍ରବିକାରେଣ ଲକ୍ଷ୍ୟତେଽନ୍ତର୍ଗତଂ ମନଃ । ୫୦ ।

ଆକାର, ମାନସିକ ଅବସ୍ଥା, ଗତିବିଧି, ଚେଷ୍ଟା ( ହସ୍ତପଦାଦି ଚାଳନା ), କଥା, ଚକ୍ଷୁ ଓ ମୁଖର ବିକୃତିରୁ ଆନ୍ତରିକ ଭାବ ଜଣାପଡ଼ିଥାଏ । ୫୦ ।

ବର୍ତ୍ତମାନ ଏ କ୍ଷେତ୍ରରେ ଉପ୍ଯୁ ଉପସ୍ଥିତ ହୋଇଥିବା ବେଳେ ମୁଁ ପ୍ରଭୁଙ୍କୁ ନଜର କରିପାରିବ । ଯେହେତୁ—

ପ୍ରସ୍ତାବସଦୃଶଂ ବାକ୍ୟଂ ସଦ୍ଭାବସଦୃଶଂ ପ୍ରିୟମ୍ ।
ଆତ୍ମଶକ୍ତିସମଂ କୋପଂ ଯୋ ଜାନାତି ସ ପଣ୍ଡିତଃ । ୫୧ ।

ଯେଉଁ ଲୋକ ପ୍ରସଙ୍ଗ ଅନୁସାରେ କଥାବାର୍ତ୍ତା କରିଜାଣେ, ସଦ୍ଭାବ ଅନୁରୂପ ପ୍ରେମ ତଥା ସାମର୍ଥ୍ୟ ଅନୁରୂପ କ୍ରୋଧ ପ୍ରକାଶ କରିଜାଣେ, ସେ ପଣ୍ଡିତପଦବାଚ୍ୟ ।" ୫୧ ।

କରଟକ କହିଲା, "ସଖେ, ତୁମେ ସେବା ବିଷୟରେ ଅନଭିଜ୍ଞ । ଦେଖ—

ଅନାହୂତୋ ବିଶେଦ୍‌ଯସ୍ତୁ ଅପୃଷ୍ଟୋ ବହୁ ଭାଷତେ ।
ଆତ୍ମାନଂ ମନ୍ୟତେ ପ୍ରୀତଂ ଭୂପାଳସ୍ୟ ସ ଦୁର୍ମତିଃ । ୫୨ ।

ଯିଏ ନ ଡାକୁଣୁ ପାଖକୁ ଆସେ, ନ ପଚାରୁଣୁ ଅନେକ କଥା କହିଯାଏ, ନିଜକୁ ରାଜାଙ୍କର ପ୍ରିୟ ବୋଲି ମନେକରେ, ସେ ନିଶ୍ଚୟ ନିର୍ବୋଧ ଅଟେ ।" ୫୨ ।

ଦମନକ କହିଲା, "ଭଦ୍ର, ମୁଁ ପ୍ରଭୁସେବା ବିଷୟରେ ଅନଭିଜ୍ଞ କିପରି ? ଦେଖ—

କମପ୍ୟସ୍ତି ସ୍ୱଭାବେନ ସୁନ୍ଦରଂ ବାପ୍ୟସୁନ୍ଦରମ୍
ଯଦେବ ରୋଚତେ ଯସ୍ମୈ ଭବେତ୍ତତ୍ତସ୍ୟ ସୁନ୍ଦରମ୍ । ୫୩ ।

କୌଣସି ବସ୍ତୁ ସ୍ୱଭାବତଃ ସୁନ୍ଦର ହୁଏନି କି ଅସୁନ୍ଦର ହୁଏନି । ପରନ୍ତୁ ଯହିଁରେ ଯାହାର ରୁଚି ଥାଏ, ସେ ତା ପକ୍ଷରେ ସୁନ୍ଦର ହୁଏ । ୫୩ । ଯେହେତୁ—

ଯସ୍ୟ ଯସ୍ୟ ହି ଯୋ ଭାବସ୍ତେନ ତେନ ହି ତଂ ନରମ୍ ।
ଅନୁପ୍ରବିଶ୍ୟ ମେଧାବୀ କ୍ଷିପ୍ରମାତ୍ମବଶଂ ନୟେତ୍ ॥ ୫୪ ॥

ବୁଦ୍ଧିମାନ୍ ଲୋକର କର୍ତ୍ତବ୍ୟ ହେଉଛି, ଯାହାର ଅଭିପ୍ରାୟ ଯେପରି, ସେହି ଅନୁସାରେ ତାର ହୃଦୟରେ ପ୍ରବେଶ କରି ତାକୁ ଆପଣାର କରିନେବ । ୫୪ । ପୁଣି—

କୋଽତ୍ରେତ୍ୟାହୂମିତି ବ୍ରୂୟାତ୍ ସମ୍ୟଗାଦେଶୟେତି ଚ ।
ଆଜ୍ଞାମବିତଥାଂ କୁର୍ଯ୍ୟାଦ୍ ଯଥାଶକ୍ତି ମହୀପତେଃ ॥ ୫୫ ॥

ରାଜା ଯେବେ କହନ୍ତି, 'ଏଠି କିଏ ଅଛନ୍ତି ?' ତେବେ 'ଆଜ୍ଞା, ମୁଁ ଅଛି । ଆଦେଶ ଦିଅନ୍ତୁ' ଏହିପରି କହିବା ଉଚିତ । ଯଥାଶକ୍ତି ରାଜାଙ୍କର ଆଦେଶ ପାଳନ କରିବା ବିଧେୟ । ୫୫ ।

ଅଳ୍ପେଚ୍ଛୁର୍ଧୃତିମାନ୍ ପ୍ରାଜ୍ଞଶ୍ଛାୟେବାନୁଗତଃ ସଦା ।
ଆଦିଷ୍ଟୋ ନ ବିକଳ୍ପେତ ସ ରାଜବସତୌ ବସେତ୍ ॥ ୫୬ ॥

ଯିଏ ସାମାନ୍ୟ ବସ୍ତୁ ଇଚ୍ଛାକରେ, ଧୈର୍ଯ୍ୟବାନ୍, ବୁଦ୍ଧିମାନ୍ ଓ ଛାୟାପରି ସଦାଦା ଅନୁଗତ ହୋଇଥାଏ, ରାଜାଦେଶ ପାଳନ କରି-ବାରେ ଇତସ୍ତତଃ ହୁଏ ନାହିଁ, ସେ କେବଳ ରାଜସେବକ ହୋଇ-ପାରେ ।" ୫୬ ।

କରଟକ କହିଲା, "ସମ୍ଭବତଃ ତୁମେ କେବେ ଅସମୟରେ ରାଜାଙ୍କ ପାଖକୁ ଯାଇଥିବାରୁ ପ୍ରଭୁ ତୁମକୁ ଅପମାନ କରିଥିବେ ।" ଦମନକ କହିଲା, "ତାହା ହୋଇଥିବ, ତଥାପି ସ୍ୱାମୀଙ୍କ ନିକଟରେ ରହିବା ଅବଶ୍ୟ କର୍ତ୍ତବ୍ୟ । ଯେହେତୁ—

ଦୋଷଭୀତେରନାରମ୍ଭସ୍ତତ୍କାପୁରୁଷଲକ୍ଷଣମ୍ ।
କୈରଜୀର୍ଣ୍ଣଭୟାଦ୍ ଭ୍ରାତର୍ଭୋଜନଂ ପରିହୀୟତେ ॥ ୫୭ ॥

ଦୋଷଭୟରେ କାର୍ଯ୍ୟ ଆରମ୍ଭ ମୁଦ୍ଧା ନ କରିବା ହେଉଛି କାପୁରୁଷର ଲକ୍ଷଣ । କହ ଭାଇ, ଅଜୀର୍ଣ୍ଣ ହେବା ଭୟରେ କେହି ଆହାର ଗ୍ରହଣ ନ କରେ କି ? ୫୭ । ପୁଣି ଦେଖ—

ଆସନ୍ନମେବ ନୃପତିର୍ଭଜତେ ମନୁଷ୍ୟଂ
ବିଦ୍ୟାବିହୀନମକୁଳୀନମସଙ୍ଗତଂ ବା ।
ପ୍ରାୟେଣ ଭୂମିପତୟଃ ପ୍ରମଦା ଲତାଶ୍ଚ
ଯଃ ପାର୍ଶ୍ୱତୋ ବସତି ତଂ ପରିବେଷ୍ଟୟନ୍ତି । ୫୮ ।

ପାଖରେ ଥିବା ଲୋକ ବିଦ୍ୟାହୀନ, କୁଳହୀନ, ଅଯୋଗ୍ୟ ହୋଇଥିଲେହେଁ ରାଜା ତାକୁ ମନେ ରଖନ୍ତି । ପ୍ରାୟଶଃ ରାଜା, ନାରୀ ଓ ଲତା ଯାହାକୁ ପାଖରେ ପାଆନ୍ତି ତାକୁହିଁ ଆଶ୍ରୟ କରିଥାନ୍ତି ।" ୫୮ ।

କରଟକ କହିଲା, "ତୁମେ ଯାଇ ରାଜାଙ୍କୁ କଅଣ କହିବ ?" ଦମନକ ଉତ୍ତର କଲା, "ଶୁଣ, ପ୍ରଭୁ ମୋ ପ୍ରତି ଅନୁରକ୍ତ କି ବିରକ୍ତ ସେ କଥା ବୁଝିବି ।" କରଟକ କହିଲା, "ସେ କଥା କେଉଁ ଲକ୍ଷ-ଣରୁ ଜାଣିବ ?" ଦମନକ କହିଲା, "ହେଉ, ଶୁଣ—

ଦୂରାଦବେକ୍ଷଣଂ ହାସଃ ସଂପ୍ରଶ୍ନେଷ୍ୱାଦରୋ ଭୃଶମ୍ ।
ପରୋକ୍ଷେଽପି ଗୁଣଶ୍ଲାଘା ସ୍ମରଣଂ ପ୍ରିୟବସ୍ତୁଷୁ । ୫୯ ।

ଅସେବକେ ଚାନୁରକ୍ତିର୍ଦାନଂ ସପ୍ରିୟଭାଷଣମ୍
ଅନୁରକ୍ତସ୍ୟ ଚିହ୍ନାନି ଦୋଷେଽପି ଗୁଣସଂଗ୍ରହଃ । ୬୦ ।

ଦୂରରୁ ଅବଲୋକନ, ହାସ୍ୟ, ଆଦର ସହକାରେ ପ୍ରଶ୍ନଶ୍ରବଣ, ପରୋକ୍ଷରେ ମଧ୍ୟ ପ୍ରଶଂସାବାଦ, ପ୍ରିୟ ବସ୍ତୁର ସ୍ମରଣ, ସେବା ନ କଲେ ମଧ୍ୟ ଅନୁରାଗ ଦାନ, ମିଷ୍ଟ ବାକ୍ୟକଥନ, ଦୋଷ ଥିଲେ ମଧ୍ୟ

କେବଳ ଗୁଣଗ୍ରହଣ—ଏଗୁଡ଼ିକ ହେଉଛି ରାଜାଙ୍କ ପ୍ରସନ୍ନତାର ଲକ୍ଷଣ ୫୯-୬୦ । କିନ୍ତୁ—

କାଳଯାପନମାଶାନାଂ ବର୍ଦ୍ଧନଂ ଫଳଖଣ୍ଡନମ୍ ।
ବିରକ୍ତେଶ୍ୱରଚିହ୍ନାନି ଜାନୀୟାନ୍ମତିମାନ୍ନରଃ । ୬୧ ।

ବୁଦ୍ଧିମାନ୍ ଲୋକ ଜାଣିବା ଉଚିତ ଯେ ଆଜିକାଲି କରି ସମୟ ନେବା, ବୃଥା ଆଶା ବଢ଼ାଇବା ଓ ଶେଷରେ ବିଫଳ କରିବା—ଏଗୁଡ଼ିକ ହେଉଛି ପ୍ରଭୁଙ୍କର ବିରକ୍ତିର ଲକ୍ଷଣ । ୬୧ ।

ଏସବୁ କଥା ବୁଝି ରାଜା ଯେପରି ମୋର ବଶ ହେବେ, ସେହିପରି କହିବି । କାରଣ—

ଅପାୟସଂଦର୍ଶନଜାଂ ବିପତ୍ତି-
ମୁପାୟସଂଦର୍ଶନଜାଂ ଚ ସିଦ୍ଧିମ୍ ।
ମେଧାବିନୋ ନୀତିବିଧି ପ୍ରଯୁକ୍ତାଂ
ପୁରଃ ସ୍ଫୁରନ୍ତୀମିବ ଦର୍ଶୟନ୍ତି । ୬୨ ।

ବୁଦ୍ଧିମାନ୍ ଲୋକେ ନୀତିଶାସ୍ତ୍ରର ବିଧି ପ୍ରୟୋଗ କରି ଅପାୟ-ଜନିତ ବିପତ୍ତିକୁ ଓ ଉପାୟଜନିତ କାର୍ଯ୍ୟସିଦ୍ଧିକୁ ସମ୍ମୁଖରେ ଝଟକୁଥିଲା ପରି ଦେଖିପାରନ୍ତି ।" ୬୨ ।

କରଟକ କହିଲା, "ତଥାପି ପ୍ରସଙ୍ଗ ଉପସ୍ଥିତ ନ ହେଲେ ତୁମେ ତ କିଛି କହି ପାରିବ ନାହିଁ । ଯେହେତୁ—

ଅପ୍ରାପ୍ତକାଳବଚନଂ ବୃହସ୍ପତିରପି ବ୍ରୁବନ୍ ।
ପ୍ରାପ୍ନୁୟାଦ୍ ବୁଦ୍ଧ୍ୟବଜ୍ଞାନମପମାନଂ ଚ ଶାଶ୍ୱତମ୍ । ୬୩ ।

ପ୍ରସଙ୍ଗ ନ ଆସୁଣୁ କିଛି କହିଲେ ବୃହସ୍ପତି ହୁଦ୍ଧା ମୂର୍ଖ ବୋଲି ବିବେଚିତ ହେବେ ଓ ସର୍ବଦା ଅବଜ୍ଞା ଓ ଅପମାନ ପାଇବେ ।" ୬୩

ଦମନକ କହିଲା, "ମିତ୍ର, ତୁମେ ଭୟ କର ନାହିଁ । ଅବସର ନ ଦେଖି ମୁଁ କିଛି ହେଲେ କହିବ ନାହିଁ । କାରଣ—

ଆପଦ୍ୟୁନ୍ମାର୍ଗଗମନେ କାର୍ଯ୍ୟକାଳାତ୍ୟୟେଷୁ ଚ ।
ଅପୃଷ୍ଟେନାପି ବକ୍ତବ୍ୟଂ ଭୃତ୍ୟେନ ହିତମିଚ୍ଛତା । ୭୪ ।

ପ୍ରଭୁ ବିପଦରେ ପଡ଼ିଥିଲେ, ବିପଥଗାମୀ ହେଲେ କିମ୍ବା କାର୍ଯ୍ୟସମୟ ଅତିକ୍ରାନ୍ତ ହୋଇଗଲେ ପ୍ରଭୁଙ୍କର ହିତାକାଙ୍କ୍ଷୀ ଭୃତ୍ୟ, ପ୍ରଭୁ ନ ପଚାରିଲେ ମଧ୍ୟ ହିତ କଥା କହିବା ଉଚିତ । ୭୪ ।

ସୁଯୋଗ ପାଇ ମଧ୍ୟ ଯଦି ମୁଁ ମନ୍ତ୍ରଣା (ଉପଦେଶ) ଦେଇ ନ ପାରେ ତେବେ ମୋର ମନ୍ତ୍ରିତ୍ୱ ବୃଥା ବୋଲି ଜାଣିବାକୁ ହେବ । କାରଣ—

କଳ୍ପୟତି ଯେନ ବୃତ୍ତିଂ ଯେନ ଚ ଲୋକେ ପ୍ରଶସ୍ୟତେ ସଦ୍ଭିଃ ।
ସ ଗୁଣସ୍ତେନ ଚ ଗୁଣିନା ରକ୍ଷ୍ୟଃ ସଂବର୍ଦ୍ଧନୀୟଶ୍ଚ । ୭୫ ।

ଯେଉଁ ଗୁଣଦ୍ୱାରା ଜୀବିକାନିର୍ବାହ ହୁଏ, ଯେଉଁ ଗୁଣ ହେତୁରୁ ସାଧୁଲୋକଙ୍କଠାରୁ ପ୍ରଶଂସା ମିଳେ, ଗୁଣବାନ୍ ଲୋକ ସେହି ଗୁଣକୁ ରକ୍ଷା କରିବା ଉଚିତ ଓ ତାହାକୁ ବଢ଼ାଇବା ଉଚିତ । ୭୫ ।

ତେଣୁ ହେ ଭଦ୍ର, ମୋତେ ଅନୁମତି ଦିଅ; ମୁଁ ଯାଉଛି ।"

କରଟକ କହିଲା, "ତୁମର ମଙ୍ଗଳ ହେଉ । ତୁମର ମାର୍ଗ ମଙ୍ଗଳମୟ ହେଉ । ଯାଅ, ନିଜର ଇଚ୍ଛା ଅନୁସାରେ କାର୍ଯ୍ୟ କର ।"

ତଦନନ୍ତର ଦମନକ ଚକିତ ହେଲାପରି ପିଙ୍ଗଳକଙ୍କ ନିକଟକୁ ଗଲା ।

ରାଜା ପିଙ୍ଗଳକ ତାହାକୁ ଦୂରରୁ ଦେଖି ଆଦରରେ ପାଖକୁ ଡକାଇନେଲେ । ଦମନକ ସାଷ୍ଟାଙ୍ଗ ପ୍ରଣାମ କରି ରାଜାଙ୍କ ପାଖରେ

ବସିଲା । ପିଙ୍ଗଳକ କହିଲେ, "ବହୁଦିନ ପରେ ତୁମର ଦେଖା ମିଳିଲା ।" ଦମନକ କହିଲା, "ଯଦିଓ ମୋଭଳି ସାମାନ୍ୟ ସେବକଠାରେ ପ୍ରଭୁଙ୍କର କିଛି ପ୍ରୟୋଜନ ନାହିଁ ତଥାପି ସେବକର ସମୟ ପଡ଼ିଲେ ସେ ନିଶ୍ଚୟ ପ୍ରଭୁଙ୍କ ନିକଟକୁ ଆସିବା ଉଚିତ; ତେଣୁ ଆସିଛି । ଯେହେତୁ--

ଦନ୍ତସ୍ୟ ନିର୍ଘର୍ଷଣକେନ ରାଜନ୍
କର୍ଣ୍ଣସ୍ୟ କଣ୍ଡୂୟନକେନ ବାପି ।
ତୃଣେନ କାର୍ଯ୍ୟଂ ଭବତୀଶ୍ୱରାଣାଂ
କିମଙ୍ଗବାକ୍‌ପାଣିମତା ନରେଣ । ୬୭ ।

ହେ ରାଜନ୍, ଦନ୍ତର ଘର୍ଷଣ, କର୍ଣ୍ଣର କଣ୍ଡୂୟନ ତଥା ତୃଣ ମଧ୍ୟ ରାଜାଙ୍କର ପ୍ରୟୋଜନ ହୋଇଥାଏ; ତେବେ ବାକ୍‌ଶକ୍ତି, ଅଙ୍ଗପ୍ରତ୍ୟଙ୍ଗ ହସ୍ତପଦ ବିଶିଷ୍ଟ ମନୁଷ୍ୟ କଥା କଅଣ କହିବା । ୬୭ ।

ଯଦ୍ୟପି ଆପଣ ଅନେକ ଦିନ ହେଲା ମୋତେ ଉପେକ୍ଷା କରିଅଛନ୍ତି, ତେଣୁ ମୋର ବୁଦ୍ଧି ଭ୍ରଂଶ ହୋଇଅଛି ବୋଲି ଆପଣଙ୍କର ଆଶଙ୍କା ହୋଇଥିବ । କିନ୍ତୁ ଆପଣଙ୍କର ଏପରି ଆଶଙ୍କା କରିବାର କାରଣ ନାହିଁ । ଯେହେତୁ—

କଦର୍ଥିତସ୍ୟାପି ହି ଧୈର୍ଯ୍ୟବୃତ୍ତେ-
ର୍ବୁଦ୍ଧିର୍ବିନାଶୋ ନହି ଶଙ୍କନୀୟଃ ।
ଅଧଃକୃତସ୍ୟାପି ତନୂନପାତଃ
ନାଧଃ ଶିଖା ଯାତି କଦାଚିଦେବ । ୬୭ ।

ଧୈର୍ଯ୍ୟଶୀଳ ଲୋକ ପ୍ରଭୁଙ୍କଦ୍ୱାରା ତିରସ୍କୃତ ହେଲେ ମଧ୍ୟ ତାର ବୁଦ୍ଧି ନାଶ ଶଙ୍କା କରିବା ଅନୁଚିତ । ଯେପରି ଅଗ୍ନିର

ଶିଖାକୁ ଅଧଃପତିତ କଲେ ମଧ୍ୟ ତାହା କଦାପି ଅଧୋଗାମୀ ହୁଏ ନାହିଁ । ୬୨ ।

ହେ ରାଜନ୍, ପ୍ରଭୁ ସର୍ବଥା ବିଚାରଶୀଳ ହେବା ଆବଶ୍ୟକ । କାରଣ—

ମଣିର୍ଲୁଠତି ପାଦେଷୁ କାଚଃ ଶିରସି ଧାର୍ଯ୍ୟତେ ।
ଯଥୈବାସ୍ତେ ତଥୈବାସ୍ତାଂ କାଚଃ କାଚୋମଣିର୍ମଣିଃ । ୬୮ ।

କେହି ଯଦି ଅଜ୍ଞତାବଶତଃ ମଣିକୁ ପାଦତଳେ ଫିଙ୍ଗିଦିଏ ଓ କାଚକୁ ନେଇ ମସ୍ତକରେ ଧାରଣ କରେ ତଥାପି ସିଏ ଯାହା, ସେ ତାହାହିଁ ରହେ । କାଚ କାଚ ହୋଇ ରହେ, ମଣି ମଣି ହୋଇ ରହେ । ୬୮ । ପୁଣି—

ନିର୍ବିଶେଷୋ ଯଦା ରାଜା ସମଂ ସର୍ବେଷୁ ବର୍ତ୍ତତେ ।
ତଦୋଦ୍ୟମସମର୍ଥାନାମୁତ୍ସାହଃ ପରିହୀୟତେ । ୬୯ ।

ଯେତେବେଳେ ରାଜା ଭୃତ୍ୟମାନଙ୍କର ଗୁଣ ବିଚାର ନ କରି ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖନ୍ତି, ସେତେବେଳେ ଉଦ୍ୟମଶୀଳ ସେବକମାନଙ୍କର ଉତ୍ସାହ ହ୍ରାସ ପାଇଥାଏ । ୬୯ । ପୁଣି—

ତ୍ରିବିଧାଃ ପୁରୁଷା ରାଜନ୍ନୁତ୍ତମାଧମମଧ୍ୟମାଃ ।
ନିୟୋଜୟେତ୍ତଥୈବୈତାଂସ୍ତ୍ରିବିଧେଷ୍ୱେବ କର୍ମସୁ । ୭୦ ।

ହେ ରାଜନ୍, ପୁରୁଷମାନେ ଉତ୍ତମ, ମଧ୍ୟମ, ଅଧମ ଏହି ତିନି ଶ୍ରେଣୀରେ ବିଭକ୍ତ । ତେଣୁ ଏହି ତିନି ଶ୍ରେଣୀର ଲୋକଙ୍କୁ ତିନି ପ୍ରକାର—ଉତ୍ତମ, ମଧ୍ୟମ, ଅଧମ କାର୍ଯ୍ୟରେ ନିଯୁକ୍ତ କରିବା ଉଚିତ । ୭୦ । ଯେହେତୁ—

ସ୍ଥାନ ଏବ ନିଯୋଜ୍ୟନ୍ତେ ଭୃତ୍ୟାଶ୍ଚାଭରଣାନି ଚ ।
ନ ହି ଚୂଡ଼ାମଣିଃ ପାଦେ ନୂପୁରଂ ଶିରସା କୃତମ୍ । ୭୧ ।

ଭୃତ୍ୟ ଓ ଆଭରଣକୁ ଯଥାସ୍ଥାନରେ ଲଗାଇବା ଉଚିତ । ମସ୍ତକର ମଣିକୁ ପାଦରେ ଓ ପାଦର ନୂପୁରକୁ ମସ୍ତକରେ ଲଗାଇବା କଦାପି ଉଚିତ ନୁହେଁ । ୭୧ । ପୁଣି—

କନକଭୂଷଣସଂଗ୍ରହଣୋଚିତୋ
ଯଦି ମଣିସ୍ତ୍ରପୁଣି ପ୍ରଣିଧୀୟତେ ।
ନ ସ ବିରୌତି ନ ଚାପି ନ ଶୋଭତେ
ଭବତି ଯୋଜୟିତୁର୍ବଚନୀୟତା । ୭୨ ।

ସ୍ୱର୍ଣ୍ଣ ଅଳଙ୍କାରରେ ଖଚିତ ହେବାର ଯୋଗ୍ୟ ମଣି ଯଦି ରଙ୍ଗ ( ଖପର ) ସହିତ ଯୋଡ଼ାଯାଏ, ତେବେ ସେ ମଣି କାନ୍ଦି ଉଠେ ନାହିଁ କି ଶୋଭାପାଏ ନାହିଁ; କିନ୍ତୁ ଏହାର ଗଠନକାରୀର ନିନ୍ଦା ହୁଏ । ୭୨ । ପୁଣି—

ମୁକୁଟେ ରୋପିତଃ କାଚଶ୍ଚରଣାଭରଣେ ମଣିଃ
ନହି ଦୋଷୋ ମଣେରସ୍ତି କିନ୍ତୁ ସାଧୋରବିଜ୍ଞତା । ୭୩ ।

ଯଦି ମୁକୁଟରେ କାଚ ଓ ପାଦର ଅଳଙ୍କାରରେ ମଣି ଖଚିତ ହୁଏ, ତାହାହେଲେ ମଣିର ଦୋଷ ହୁଏ ନାହିଁ । ଦୋଷ ହୁଏ ସ୍ୱର୍ଣ୍ଣକାରର । ୭୩ । ଦେଖ—

ବୁଦ୍ଧିମାନନୁରକ୍ତୋଽୟମୟଂ ଶୂର ଇତୋ ଭୟମ୍ ।
ଇତି ଭୃତ୍ୟବିଚାରଜ୍ଞୋ ଭୃତ୍ୟୈରାପୂର୍ଯ୍ୟତେ ନୃପଃ । ୭୪ ।

ଏ ସେବକ ବୁଦ୍ଧିମାନ୍, ଏ ମୋ ପ୍ରତି ଅନୁରକ୍ତ, ଏ ପରାକ୍ରମୀ, ଏ ଭୃତ୍ୟଙ୍କୁ ମୋର ଭୟ—ଏହିପରି ସେବକମାନଙ୍କ ବିଷୟରେ

ବଗୁର କଲ୍ୟାଣରେ ନିପୁଣ ସ୍ୱାମୀ ସର୍ବଦା ବହୁ ସେବକ ଦ୍ୱାରା ପୂର୍ଣ୍ଣ ହୋଇଥାନ୍ତି । ୭୪ । ପୁନଶ୍ଚ—

ଅଶ୍ୱଃ ଶସ୍ତ୍ରଂ ଶାସ୍ତ୍ରଂ ବୀଣା ବାଣୀ ନରଶ୍ଚ ନାରୀ ଚ ।
ପୁରୁଷବିଶେଷଂ ପ୍ରାପ୍ୟ ହି ଭବନ୍ତି ଯୋଗ୍ୟା ଅଯୋଗ୍ୟାଶ୍ଚ ।୭୫।

ଘୋଡ଼ା, ଶସ୍ତ୍ର, ଶାସ୍ତ୍ର, ବୀଣା, ବାଣୀ, ପୁରୁଷ, ନାରୀ—ଏ ସବୁ ଯୋଗ୍ୟ ବା ଅଯୋଗ୍ୟ ପୁରୁଷର ହସ୍ତଗତ ହେବା ଅନୁସାରେ ଯୋଗ୍ୟ ବା ଅଯୋଗ୍ୟ ହୋଇଥାନ୍ତି । ୭୫ । ପୁଣି—

କିଂ ଭକ୍ତେନାସମର୍ଥେନ କିଂ ଶକ୍ତେନାପକାରିଣା ।
ଭକ୍ତଂ ଶକ୍ତଂ ଚ ମାଂ ରାଜନ୍ନବଜ୍ଞାତୁଂ ତ୍ୱମର୍ହସି । ୭୬ ।

ପ୍ରଭୁଭକ୍ତ ଅଥଚ ଅସମର୍ଥ ଭୃତ୍ୟଦ୍ୱାରା କି ଲାଭ ? ସମର୍ଥ ଅଥଚ ଅପକାରୀ ଭୃତ୍ୟଦ୍ୱାରା ଲାଭ କଅଣ ? ହେ ରାଜନ୍, ତେଣୁ ମୋ ଭଳି ପ୍ରଭୁଭକ୍ତ ଓ ଶକ୍ତିଶାଳୀ ଭୃତ୍ୟକୁ ଅନାଦର କରିବା ଉଚିତ ନୁହେଁ । ୭୬ । ଯେହେତୁ—

ଅବଜ୍ଞାନାଦ୍ରାଜ୍ଞୋ ଭବତି ମତିହୀନଃ ପରିଜନଃ
ତତସ୍ତତ୍‌ପ୍ରାମାଣ୍ୟାଦ୍‌ଭବତି ନ ସମୀପେ ବୁଧଜନଃ ।
ବୁଧୈସ୍ତ୍ୟକ୍ତେ ରାଜ୍ୟେ ନ ହି ଭବତି ନୀତିର୍ଗୁଣବତୀ
ବିପନ୍ନାୟାଂ ନୀତୌ ସକଳମବଶଂ ସୀଦତି ଜଗତ୍ । ୭୭ ।

ରାଜାଙ୍କର ଅନାଦର ହେତୁରୁ ପରିଜନ ବୁଦ୍ଧିହୀନ ହୋଇଯାଏ । ତାହାକୁ ବୁଦ୍ଧିହୀନ ବୋଲି ସ୍ଥିର କରି ପଣ୍ଡିତମାନେ ତାହା ପାଖକୁ ଯାଆନ୍ତି ନାହିଁ ।

ବିଦ୍ୱାନ୍ ଲୋକେ ଗୁଡ଼ିପିବାରୁ ରାଜ୍ୟର ନୀତି ଗୁଣହୀନ ହୋଇଯାଏ । ନୀତି ଦୂଷିତ ହେଲେ ପ୍ରଜାକୁଳ ଉଚ୍ଛୃଙ୍ଖଳ ହୋଇ କଷ୍ଟଭୋଗ କରନ୍ତି । ୭୭ ।

ଜନଂ ଜନପଦା ନତ୍ୟର୍ଚ୍ଚ୍ୟଂ ନୃପାର୍ଚ୍ଚିତମ୍ ।
ନୃପେଣାବମତୋ ଯସ୍ତୁ ସ ସର୍ବୈରବମନ୍ୟତେ । ୭୮ ।

ରଜାଙ୍କଦ୍ୱାରା ସମ୍ମାନିତ ଲୋକକୁ ଦେଶବାସୀ ମଧ୍ୟ ପୂଜା କରନ୍ତି । କିନ୍ତୁ ଯେଉଁ ଲୋକ ରଜାଙ୍କଦ୍ୱାରା ଅପମାନିତ ହୁଏ, ସେ ସବୁ ଲୋକଙ୍କଦ୍ୱାରା ଅପମାନିତ ହୁଏ । ୭୮ । ପୁଣି—

ବାଳାଦପି ଗ୍ରହୀତବ୍ୟଂ ଯୁକ୍ତମୁକ୍ତଂ ମନୀଷିଭିଃ
ରବେରବିଷୟେ କିଂ ନ ପ୍ରଦୀପସ୍ୟ ପ୍ରକାଶନମ୍ । ୭୯ ।

ବାଳକର ଯୁକ୍ତିଯୁକ୍ତ କଥାକୁ ବିଦ୍ୱାନ୍ ଲୋକେ ମଧ୍ୟ ଗ୍ରହଣ କରିନେବା ଉଚିତ । ଆକାଶରେ ସୂର୍ଯ୍ୟ ନ ଥିଲାବେଳେ କଅଣ ପ୍ରଦୀପର ଆଲୋକ ଗ୍ରହଣ କରାଯାଏ ନାହିଁ ?" ୭୯ । (ଆପଣ ଦେଖୁଛନ୍ତି, ଏଠାରେ ପ୍ରବୀଣ ପରାମର୍ଶଦାତା ନଥିବା ସ୍ଥଳେ ମୋର ପରାମର୍ଶ ଗ୍ରହଣ କରନ୍ତୁ । )"

ପିଙ୍ଗଳକ କହିଲେ, "ଭଦ୍ର ଦମନକ, ଏ କଅଣ କହୁଛ ? ତୁମେ ହେଉଛ ମୋର ପ୍ରଧାନମନ୍ତ୍ରୀଙ୍କର ପୁଅ । ଏତେ ଦିନ ହେଲା କୌଣସି ଖଳ ଲୋକର କଥାରେ ପଡ଼ି ତୁମେ ମୋ ପାଖକୁ ଆସି ନଥିଲ । ଏବେ ତୁମର ନିଜ କଥା କୁହ ।" ଦମନକ କହିଲା, "ଦେବ, ମୁଁ ଆପଣଙ୍କୁ କିଛି ପଚାରୁଛି । କହିବା ହେଉ । ଆପଣ ଜଳପାନ କରିବାକୁ ଯାଇଥିଲେ । କିନ୍ତୁ ଜଳପାନ ନ କରି କାହିଁକି ବିସ୍ମୟାନ୍ୱିତ ହୋଇପରି ବସିଛନ୍ତି ?" ପିଙ୍ଗଳକ କହିଲେ, "ତୁମେ ଯଥାର୍ଥ କହିଅଛ । କିନ୍ତୁ ଏହାର ରହସ୍ୟ ଶୁଣିବାପାଇଁ କୌଣସି ପାତ୍ର ନାହିଁ । ତଥାପି ମୁଁ ଚୁପ୍ କରି କହୁଛି ଶୁଣ । ଏବେ ଏହି ବନରେ ଗୋଟିଏ ଅଦ୍ଭୁତ ଜୀବ ଆସି ବାସ କଲାଣି । ତେଣୁ

ଏହାକୁ ତ୍ୟାଗକରି ଚାଲିଯିବା ଉଚିତ । ଏହି ହେତୁରୁ ମୁଁ ଚକିତ ହୋଇଅଛି । ଆହୁରି ମଧ୍ୟ ମୁଁ ସେହି ଜୀବର ମହାନ୍ ଶବ୍ଦ ଶୁଣିଅଛି । ସେହି ପ୍ରାଣୀର ଶବ୍ଦର ଅନୁରୂପ ବଳ ନିଶ୍ଚୟ ଥିବ ।"

ଦମନକ କହିଲା, "ଦେବ, ତାହା ହେଲେ ଯଥେଷ୍ଟ ଭୟର କାରଣ ଅଛି । ସେ ଶବ୍ଦ ଆମେମାନେ ମଧ୍ୟ ଶୁଣିଛୁ । କିନ୍ତୁ ଯିଏ ପ୍ରଥମେ ସ୍ଥାନ ତ୍ୟାଗକରି ପରେ ଯୁଦ୍ଧ କରିବାକୁ ଉପଦେଶ ଦିଏ ସେ କି ମନ୍ତ୍ରୀ ? ଏପରି ସନ୍ଦେହାତ୍ମକ ବିଷୟରେ ଭୃତ୍ୟମାନଙ୍କର ଉପଯୋଗିତା ବୁଝିବା ଆବଶ୍ୟକ । କାରଣ—

ବନ୍ଧୁସ୍ତ୍ରୀଭୃତ୍ୟବର୍ଗସ୍ୟ ବୁଦ୍ଧେଃ ସତ୍ତ୍ୱସ୍ୟ ଚାତ୍ମନଃ ।
ଆପନ୍ନିକଷପାଷାଣେ ନରୋ ଜାନାତି ସାରତାମ୍ ।୮୦।

ବିପଦରୂପକ କଷଟିପଥରରେ ବନ୍ଧୁ, ସ୍ତ୍ରୀ ଓ ଭୃତ୍ୟବର୍ଗଙ୍କର ବୁଦ୍ଧିର ଓ ନିଜର ପରାକ୍ରମର ସାରତା ପରୀକ୍ଷା ହୁଏ ।" ୮୦ ।

ସିଂହ କହିଲା, "ଭଦ୍ର, ମୋର ମହାନ୍ ଭୟ ହେଉଅଛି ।" ଦମନକ ମନକୁମନ କହିଲା, "ତା ହୋଇ ନ ଥିଲେ ରାଜସୁଖ ଛାଡ଼ି ସ୍ଥାନାନ୍ତରକୁ ଯିବାପାଇଁ ମୋତେ କାହିଁକି କହନ୍ତେ ?" ତତ୍ପରେ ପ୍ରକାଶ କରି କହିଲା, "ଯେତେଦିନ ପର୍ଯ୍ୟନ୍ତ ମୁଁ ବଞ୍ଚି ରହିଛି, ସେତେଦିନ ଯାଏ ଭୟ କରିବାର କାରଣ ନାହିଁ । କିନ୍ତୁ କରଟକ ପ୍ରଭୃତିଙ୍କୁ ମଧ୍ୟ ଆଶ୍ୱାସନା ଦେବାକୁ ହେବ; କାରଣ ବିପଦର ପ୍ରତିକାର ବେଳେ ସବୁ ପୁରୁଷଙ୍କୁ ଏକତ୍ର କରିବା କଷ୍ଟକର ବ୍ୟାପାର ।"

ଏହାପରେ ଦମନକ ଓ କରଟକ ରାଜାଙ୍କଠାରୁ ଉତ୍ତମ ସମ୍ମାନ ପାଇ ଭୟର ପ୍ରତିକାର କରିବେ ବୋଲି ପ୍ରତିଜ୍ଞା କରି

ଗୁଳିଗଲେ । ଯାଉ ଯାଉ କରଟକ ଦମନକକୁ କହିଲା, "ସଖେ, ଭୟର କାରଣ ଦୂର କରି ଦେବ କି ନା, ନ ବୁଝି ଭୟ ଉପଶମ କରିବୁ ବୋଲି ପ୍ରତିଜ୍ଞାପୂର୍ବକ ରାଜାଙ୍କ ଅନୁଗ୍ରହ ସ୍ୱୀକାର କରି ନେଲ । ଉପକାର ନକରି କାହାଠାରୁ ପୁରସ୍କାର ଗ୍ରହଣ କରିବା ଅନୁଚିତ । ବିଶେଷତଃ ରାଜାଙ୍କଠାରୁ କଦାପି ଉଚିତ ନୁହେଁ । ଦେଖ—

ଯସ୍ୟ ପ୍ରସାଦେ ପଦ୍ମାଽସ୍ତେ ବିଜୟଶ୍ଚ ପରାକ୍ରମେ ।
ମୃତ୍ୟୁଶ୍ଚ ବସତି କ୍ରୋଧେ ସର୍ବତେଜୋମୟୋ ହି ସଃ । ୮୧ ।

ଯେଉଁ ରାଜାଙ୍କ ଅନୁଗ୍ରହରେ ଲକ୍ଷ୍ମୀ, ପରାକ୍ରମରେ ବିଜୟ ଓ କ୍ରୋଧରେ ମୃତ୍ୟୁ ବାସ କରନ୍ତି, ସେହି ରାଜା ସର୍ବତେଜୋମୟ ଅଟନ୍ତି । ୮୧ । ପୁଣି—

ବାଳୋଽପି ନାବମନ୍ତବ୍ୟୋ ମନୁଷ୍ୟ ଇତି ଭୂମିପଃ
ମହତୀ ଦେବତା ହ୍ୟେଷା ନରରୂପେଣ ତିଷ୍ଠତି । ୮୨ ।

ରାଜା ବାଳକ ହୋଇଥିଲେ ମଧ୍ୟ ସେ ମନୁଷ୍ୟ ବୋଲି ତାଙ୍କୁ ଅବମାନନା କରିବା ଅନୁଚିତ; କାରଣ ରାଜା ନରରୂପଧାରୀ ମହାନ୍ ଦେବତା ଅଟନ୍ତି ।" ୮୨ ।

ଦମନକ ହସି ହସି କହିଲା, "ତୁମ୍ଭେ ଭୋଳ ରହ ମିତ୍ର ! ମୁଁ ରାଜାଙ୍କର ଭୟର କାରଣ ଜାଣିଅଛି । ତାହା ହେଉଛି ଗୋଟିଏ ବୃଷଭର ଗର୍ଜନ । ବୃଷଭ ତ ଆମର ଭକ୍ଷ୍ୟ; ସିଂହ କଥା ବା କଅଣ କହିବା ?" କରଟକ କହିଲା, "ଯଦି ଏପରି ଘଟନା, ତେବେ ସେହି କଥା କହି ସଙ୍ଗେ ସଙ୍ଗେ ପ୍ରଭୁଙ୍କର ଭୟ ଦୂର କଲ ନାହିଁ କାହିଁକି ?" ଦମନକ କହିଲା, "ଯଦି ସେପରି ପ୍ରଭୁଙ୍କର ଭୟ ଦୂର କରି ଦେଇଥାନ୍ତି, ତେବେ ତାଙ୍କର ଅନୁଗ୍ରହ ମିଳିଥାନ୍ତା କିପରି ? ପୁନଶ୍ଚ—

ନିରପେକ୍ଷୋ ନ କର୍ତ୍ତବ୍ୟୋ ଭୃତ୍ୟୈଃ ସ୍ୱାମୀ କଦାଚନ ।
ନିରପେକ୍ଷଂ ପ୍ରଭୁଂ କୃତ୍ୱା ଭୃତ୍ୟଃ ସ୍ୟାଦ୍ଦଧିକର୍ଣ୍ଣବତ୍ ।୮୩।

ଭୃତ୍ୟ କେବେହେଲେ ପ୍ରଭୁଙ୍କୁ ନିରପେକ୍ଷ କରିବା ଉଚିତ ନୁହେଁ । କଲେ ଦଧିକର୍ଣ୍ଣ ତାର ପ୍ରଭୁଙ୍କୁ ନିରପେକ୍ଷ କରି ଯେପରି ହୋଇଥିଲା ସେହିପରି ହେବାକୁ ପଡ଼ିବ ।୮୩।

କରଟକ ପଚାରିଲା, "ଦଧିକର୍ଣ୍ଣ କଥା କଅଣ ?" ଦମନକ କହିଲା—

## କଥା-୩

ଉତ୍ତର ପ୍ରଦେଶରେ ଅର୍ଜୁନଶିଖର ବୋଲି ଏକ ପର୍ବତରେ ଦୁର୍ଦ୍ଧାନ୍ତ ନାମରେ ଗୋଟିଏ ସିଂହ ବାସ କରୁଥିଲା । ସେ ପର୍ବତଗହ୍ୱରରେ ଶୋଇଥିଲା ବେଳେ ଗୋଟାଏ ମୂଷା ଆସି ପ୍ରତିଦିନ ତାର କେଶରକୁ କାଟୁଥିଲା । କେଶର ଛିନ୍ନ ହେବାର ଦେଖି ସେ କୁପିତ ହେଉଥିଲା; କିନ୍ତୁ ଗର୍ତ୍ତରେ ରହୁଥିବା ମୂଷାକୁ ଧରି ନ ପାରି ମନେମନେ ଚିନ୍ତାକଲା—

କ୍ଷୁଦ୍ରଶତ୍ରୁର୍ଭବେଦ୍ୟସ୍ତୁ ବିକ୍ରମାନ୍ନୈବ ଲଭ୍ୟତେ ।
ତମାହନ୍ତୁଂ ପୁରସ୍କାର୍ଯ୍ୟଃ ସଦୃଶସ୍ତସ୍ୟ ସୈନିକଃ ।୮୪।

କ୍ଷୁଦ୍ର ଶତ୍ରୁକୁ ପରାକ୍ରମଦ୍ୱାରା ଧରି ହେବନାହିଁ । ତାକୁ ମାରିବା ପାଇଁ ତାହାରି ଭଳି କ୍ଷୁଦ୍ର ସୈନିକକୁ ତାର ସମ୍ମୁଖୀନ କରାଇବା ଉଚିତ ।୮୪।

ଏହିପରି ବିଚାରି ସେ ଗ୍ରାମକୁ ଯାଇ ଦଧିକର୍ଣ୍ଣ ନାମକ ଗୋଟିଏ ବିରାଡ଼ିର ବିଶ୍ୱାସ ଜନ୍ମାଇଲା ଓ ତାକୁ ଆଣି ନିଜ ଗହ୍ୱରରେ ରଖା-

ଇଲା; ତହୁଁ ବିରାଡ଼ର ଭୟରେ ମୂଷିକ ଗର୍ତ୍ତରୁ ବାହାରିଲା ନାହିଁ । ଏହା ଫଳରେ ସିଂହର କେଶର ଅକ୍ଷତ ରହିଲା ଓ ସେ ସୁଖରେ ଶୋଇ ପାରିଲା । କେବେ କେବେ ମୂଷିକର ରାବ ଶୁଣିଲେ ସିଂହ ମାଂସ ଆହାର ଦେଇ ବିରାଡ଼ିକୁ ସନ୍ତୁଷ୍ଟ କରେ ।

ଏକଦା ମୂଷିକ କ୍ଷୁଧାରେ ବ୍ୟାକୁଳ ହୋଇ ବାହାରକୁ ଆସିଥିବା ବେଳେ ବିରାଡ଼ି ତାହାକୁ ଧରି ମାରିଦେଲା । ଏହାପରେ ଅନେକ ଦିନ ପର୍ଯ୍ୟନ୍ତ ମୂଷାକୁ ନ ଦେଖି ଓ ତାର ଶବ୍ଦ ନ ଶୁଣି ସିଂହ ବିରାଡ଼ିର ଆବଶ୍ୟକତା ଅନୁଭବ କଲା ନାହିଁ । ତହୁଁ ସେ ବିରାଡ଼ିକୁ ଆହାର ଦେବାରେ ଅବହେଳା କଲା । ବିରାଡ଼ି ଖାଦ୍ୟାଭାବରେ ଦୁର୍ବଳ ଓ ଅବସନ୍ନ ହୋଇ ପଡ଼ିଲା । ଏହି ହେତୁରୁ ମୁଁ କହୁଥିଲି—ଦଧିକର୍ଣ୍ଣ ତାର ପ୍ରଭୁଙ୍କୁ ନିରପେକ୍ଷ କରି— ଇତ୍ୟାଦି ।''

ଏହାପରେ ଦମନକ ଓ କରଟକ ସଞ୍ଜୀବକ ପାଖକୁ ଗଲେ । କରଟକ ଗମ୍ଭୀର ହୋଇ ଗୋଟିଏ ଗଛତଳେ ବସିଲା । ଦମନକ ସଞ୍ଜୀବକ ପାଖକୁ ଯାଇ କହିଲା, ''ହେ ବୃଷଭ, ଦେଖ, ରାଜା ପିଙ୍ଗଳକ ଏହାଙ୍କୁ ବନର ରକ୍ଷକରୂପେ ନିଯୁକ୍ତ କରି ଅଛନ୍ତି । ସେନାପତି କରଟକଙ୍କର ଆଦେଶ—ଶୀଘ୍ର ତାଙ୍କ ପାଖକୁ ଚାଲ । ନ ହେଲେ ଏ ଅରଣ୍ୟକୁ ଛାଡ଼ି ଦୂରକୁ ଚାଲିଯାଅ । ଏହା ନ କଲେ ତୁମର ଖୁବ୍ ଅମଙ୍ଗଳ ହେବ । ପ୍ରଭୁ କୁପିତ ହେଲେ କଅଣ କରିବେ କହିହେବ ନାହିଁ ।'' ଏହା ଶୁଣି ସଞ୍ଜୀବକ କରଟକ ପାଖକୁ ଚାଲି ଆସିଲା । କାରଣ—

ଆଜ୍ଞାଭଙ୍ଗୋ ନରେନ୍ଦ୍ରାଣାଂ ବ୍ରାହ୍ମଣାନାମନାଦରଃ
ପୃଥକ୍‌ଶଯ୍ୟା ଚ ନାରୀଣାମଶସ୍ତ୍ରବିହିତୋବଧଃ । ୮୫ ।

ରାଜାଙ୍କର ଆଦେଶ ଭଙ୍ଗ, ବ୍ରାହ୍ମଣର ଅନାଦର ଓ ପତ୍ନୀର ପୃଥକ୍ ଶଯ୍ୟା—ଏ ତିନୋଟି କାର୍ଯ୍ୟ ବିନାଅସ୍ତ୍ରରେ ବଧ ବୋଲି କଥିତ । ୮୫ ।

ତହୁଁ ଦେଶକାଳର ଅନୁରୂପ ବ୍ୟବହାର ବିଷୟରେ ଅନଭିଜ୍ଞ ସଞ୍ଜୀବକ ଉପରେ କରଟକ ନିକଟକୁ ଯାଇ ପ୍ରଣିପାତକଲା । କଥିତ ଅଛି—

ମତିରେବ ବଳାଦ୍ ଗରୀୟସୀ
ଯଦଭାବେ କରିଣାମିୟଂ ଦଶା ।
ଇତି ଘୋଷୟତୀବ ଡିଣ୍ଡିମଃ
କରିଣୋ ହସ୍ତିପକାହତଃ କ୍ୱଣନ୍ । ୮୬ ।

ହାତୀର ପିଠି ଉପରେ ଥିବା ନାଗରା ମାହୁନ୍ତର ଆଘାତରେ ଯେଉଁ ଶବ୍ଦ କରେ, ତାହା 'ଶରୀରର ବଳଠାରୁ ବୁଦ୍ଧି ଗରୀୟସୀ' ବୋଲି ଘୋଷଣା କରୁଥିବାର ମନେ ହୁଏ । ବୁଦ୍ଧିର ଅଭାବରୁ ହସ୍ତୀ ଏତେ ବଳଶାଳୀ ହେଲେହେଁ ନିର୍ବଳ ମନୁଷ୍ୟର ବଶ ହୋଇଅଛି । ୮୬ ।

ସଞ୍ଜୀବକ ଖୁସି ହୋଇ କହିଲା, "ସେନାପତେ, ମୋତେ କଅଣ କରିବାକୁ ହେବ ଆଦେଶ କରନ୍ତୁ ।" କରଟକ କହିଲା, "ଏ ବନରେ ରହିବାର ଇଚ୍ଛା ଥିଲେ ଆସି ଆମ ପ୍ରଭୁଙ୍କ ପାଦପଦ୍ମରେ ପ୍ରଣାମ କର ।" ସଞ୍ଜୀବକ କହିଲା, "ମୋତେ ଅଭୟ ଦାନ କରନ୍ତୁ; ମୁଁ ଆପଣଙ୍କ ପ୍ରଭୁଙ୍କ ପାଖକୁ ଯିବି ।" କରଟକ କହିଲା, "ଆରେ ବୃଷଭ, ତୋର ଏପରି ଆଶଙ୍କା କରିବା ବୃଥା ।

ପ୍ରତ୍ୟାଚମଦତ୍ତ କେଶବଃ
ଶପମାନାୟ ନ ଚେଦିଭୂଭୁଜେ
ଅନହୁଙ୍କୁରୁତେ ଘନଧ୍ୱନିଂ
ନ ହି ଗୋମାୟୁରୁତାନି କେଶରୀ । ୮୬ ।

ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଚେଦିରାଜ ଶିଶୁପାଳ ଗାଳି ଦେଇଥିଲେହେଁ ଶ୍ରୀକୃଷ୍ଣ ତାଙ୍କୁ କିଛିମାତ୍ର ଉତ୍ତର ଦେଇ ନ ଥିଲେ । ମେଘର ଗର୍ଜନ ଶୁଣିଲେ ସିଂହ ଗର୍ଜିଉଠେ, କିନ୍ତୁ ଶୃଗାଳମାନଙ୍କର ରବ ଶୁଣିଲେ ଗର୍ଜନ କରେ ନାହିଁ । ୮୬ । ପୁଣି—

ତୃଣାନି ନୋନ୍ମୂଳୟତି ପ୍ରଭଞ୍ଜନୋ
ମୃଦୂନି ନୀଚୈଃ ପ୍ରଣତାନି ସର୍ବତଃ ।
ସମୁଚ୍ଛ୍ରିତାନେବ ତରୂନ୍ ପ୍ରବାଧତେ
ମହାନ୍ ମହତ୍ୟେବ କରୋତି ବିକ୍ରମମ୍ । ୮୮ ।

ତୃଣ କୋମଳ, ସବୁ ଆଡ଼କୁ ନଇଁପଡ଼ିଥାଏ । ତେଣୁ ପ୍ରଭଞ୍ଜନ ତାକୁ ଉନ୍ମୂଳ କରେ ନାହିଁ । କିନ୍ତୁ ଉନ୍ନତ ମହାଦ୍ରୁମକୁ ଉତ୍ପାଟିତ କରିଥାଏ । ବିକ୍ରମଶାଳୀ ଲୋକେ କେବଳ ପରାକ୍ରମଶାଳୀ ଲୋକଙ୍କ ପାଖରେ ନିଜର ପରାକ୍ରମ ଦେଖାଇ ଥାଆନ୍ତି । ୮୮ । ( ତେଣୁ ରାଜା ପିଙ୍ଗଳକ ତୋହପରି କ୍ଷୁଦ୍ର ପ୍ରାଣୀର କିଛି କ୍ଷତି କରିବେ ନାହିଁ । )"

ତତ୍ପରେ କରଟକ ଓ ଦମନକ ସଞ୍ଜୀବକକୁ କିଛି ଦୂରରେ ରଖାଇ ପିଙ୍ଗଳକ ନିକଟକୁ ଗଲେ । ରାଜା ଆଦରରେ ସେ ଦୁହିଁଙ୍କୁ ଗ୍ରହିଲେ ଓ ସେମାନେ ରାଜାଙ୍କୁ ପ୍ରଣାମ କରି ବସିଲେ । ତହୁଁ ପିଙ୍ଗଳକ ପଚାରିଲେ, "ତୁମ୍ଭେମାନେ କଅଣ ତାକୁ ଦେଖିଲ ?" ଦମନକ କହିଲା, "ପ୍ରଭୁ, ଅବଶ୍ୟ ଦେଖିଛୁ । ଆପଣ ତାକୁ ଯେପରି

ବଳବାନ୍ ମନେ କରୁଥିଲେ, ପ୍ରକୃତରେ ସେ ସେହିପରି ବଳିଷ୍ଠ । ସେ ଆପଣଙ୍କୁ ଦର୍ଶନ କରିବାକୁ ଆସିଛି । କିନ୍ତୁ ସେ ଅତି ବଳବାନ୍ । ଆପଣ ପ୍ରସ୍ତୁତ ହୋଇ ବସି ତାକୁ ଦେଖନ୍ତୁ । କେବଳ ତାର ଶବ୍ଦକୁ ଶୁଣି ଭୟ କରିଯିବା ଉଚିତ ନୁହେଁ । ଯଥାର୍ଥରେ କୁହା ଯାଇଅଛି—

ଶବ୍ଦମାତ୍ରାନ୍ନ ଭେତବ୍ୟମଜ୍ଞାତ୍ୱା ଶବ୍ଦକାରଣମ୍
ଶବ୍ଦହେତୁଂ ପରିଜ୍ଞାୟ କୁଟ୍ଟନୀ ଗୌରବଂ ଗତା । ୮୯ ।

ଶବ୍ଦର କାରଣ ନ ବୁଝି କେବଳ ଶବ୍ଦ ଶୁଣିବାମାତ୍ରେ ଭୟ କରିବା ଅନୁଚିତ । ଶବ୍ଦର କାରଣ ଜାଣିଥିବାରୁ କୁଟ୍ଟନୀ ଗୌରବ ଲାଭ କରିଥିଲା ।'' ୮୯ । ପିଙ୍ଗଳକ ପଚାରିଲା, 'ସେ କୁଟ୍ଟନୀ କଥା କଅଣ ?' ଦମନକ କହିଲା—

## କଥା-୪

ଶ୍ରୀପର୍ବତ ନିକଟରେ ବ୍ରହ୍ମପୁର ନାମକ ଗୋଟିଏ ନଗର ଅଛି । ଏହି ପର୍ବତର ଶିଖରରେ ଘଣ୍ଟାକର୍ଣ୍ଣ ନାମରେ ଗୋଟିଏ ରାକ୍ଷସ ଅଛି ବୋଲି ଲୋକପ୍ରବାଦ ଶୁଣାଯାଉଥିଲା ।

ଥରେ ଜଣେ ଚୋର ଗୋଟିଏ ଘଣ୍ଟ ଚୋରି କରି ପଳାଉଥିବା ସମୟରେ ବ୍ୟାଘ୍ରଦ୍ୱାରା ନିହତ ହେଲା । ତାହା ହାତରୁ ଖସି ପଡ଼ିଥିବା ଘଣ୍ଟଟିକୁ ବାନରମାନେ ନେଇଗଲେ । ସେମାନେ ପର୍ବତ ଉପରେ ରହି ସର୍ବଦା ସେହି ଘଣ୍ଟକୁ ବଜାଉଥିଲେ । ଲୋକଟିକୁ କେହି ଖାଇଥିବାର ନଗରବାସୀମାନେ ଦେଖିଥିଲେ ଓ ଅନବରତ ଘଣ୍ଟର ଶବ୍ଦ ଶୁଣିବାକୁ ପାଇଲେ । ତହୁଁ 'ଘଣ୍ଟାକର୍ଣ୍ଣ କୁପିତ ହୋଇ ଲୋକମାନଙ୍କୁ ଖାଇ ଯାଉଅଛି ଓ ଘଣ୍ଟ ବଜାଉଅଛି' ଏହା କହି ଲୋକେ ନଗର ଛାଡ଼ି ପଳାଇବାକୁ ଲାଗିଲେ । ତତ୍ପରେ କରାଳା ନାମରେ

ଜଣେ କୁଟ୍ଟନୀ ଚିନ୍ତାକଲା—"ଅସମୟରେ ଏହି ଘଣ୍ଟ ବାଜିବାର କିଛି କାରଣ ଅଛି । ତେବେ କଅଣ ମାଙ୍କଡ଼ମାନେ ଘଣ୍ଟ ବଜାଉ ଅଛନ୍ତି ?" ନିଜେ ଏହି କଥା ବୁଝିସାରି ସେ ରାଜାଙ୍କୁ ଜଣାଇଲା, "ମହାରାଜ, ଯଦି କିଛି ଅର୍ଥ ବ୍ୟୟ କରିବେ, ତେବେ ମୁଁ ଏହି ଘଣ୍ଟାକର୍ଣ୍ଣ ରାକ୍ଷସକୁ ବଶ କରିପାରିବି ।" ତହୁଁ ରାଜା ତାକୁ କିଛି ଧନ ଦେଲେ । କଉଳା ମଣ୍ଡଳ ତିଆରି କରି ତହିଁରେ ଗଣେଶାଦି ଦେବତାଙ୍କର ପୂଜା ଆଡ଼ମ୍ବର ଦେଖାଇଲା । ନିଜେ ବାନରପ୍ରିୟ ଫଳଗୁଡ଼ିଏ ନେଇ ବନ ମଧ୍ୟରେ ସେଗୁଡ଼ିକୁ ଏଣେତେଣେ ଫିଙ୍ଗି-ଦେଲା । ତହୁଁ ବାନରମାନେ ଘଣ୍ଟକୁ ଛାଡ଼ିଦେଇ ଫଳ ଆଣିବାକୁ ଚାଲିଗଲେ । ଏହି ଅବସରରେ ସେ ଘଣ୍ଟଟିକୁ ଧରି ନଗରକୁ ପଳାଇ ଆସିଲା । ନଗରର ଲୋକେ ତାର ପ୍ରଶଂସା କରିବାକୁ ଲାଗିଲେ ।

ଏହି ହେତୁରୁ ମୁଁ କହୁଥିଲି ଯେ କେବଳ ଶବ୍ଦ ଶୁଣି ଭୟ କରିଯିବା ଉଚିତ ନୁହେଁ, ଇତ୍ୟାଦି ।

ଏହାପରେ ସେ ଦୁହେଁ ସଞ୍ଜୀବକକୁ ଆଣି ପିଙ୍ଗଳକର ଦର୍ଶନ କରାଇଲେ । ତତ୍ପରେ ସଞ୍ଜୀବକ ଏମାନଙ୍କ ସହିତ ପରମପ୍ରୀତିରେ ବାସ କରିବାକୁ ଲାଗିଲା ।

ଏକଦା ପିଙ୍ଗଳକର ଭାଇ ସ୍ତବ୍ଧକର୍ଣ୍ଣ ନାମକ ଏକ ସିଂହ ସେଠାରେ ଉପସ୍ଥିତ ହେଲା । ପିଙ୍ଗଳକ ଅତିଥି ସତ୍କାର କରି ତାହାକୁ ଘରେ ବସାଇଲା ଓ ତାହାର ଭୋଜନ ନିମନ୍ତେ ଶିକାର କରିବାକୁ ବାହାରିଲା । ଏହି ସମୟରେ ସଞ୍ଜୀବକ କହିଲା, "ଦେବ, ଆଜି ମରା ହୋଇଥିବା ମୃଗର ମାଂସ କଅଣ ହେଲା ?" ପିଙ୍ଗଳକ କହିଲା, "ସେ କଥା କରଟକ ଦମନକ ଜାଣିଥିବେ ।" ତହୁଁ ସଞ୍ଜୀବକ କହିଲା, "ପ୍ରଭୁ, ମାଂସ ଅଛି କି ନା, ବୁଝନ୍ତୁ ।" ପିଙ୍ଗଳକ ଚିନ୍ତାକରି

କହିଲା, "ନା, ମାଂସ ଆଉ ନାହିଁ ।" ସଞ୍ଜୀବକ କହିଲା, "କଅଣ ! ଏତେ ମାଂସ ସେ ଦୁହେଁ ଖାଇଦେଲେ ?" ପିଙ୍ଗଳକ କହିଲା, "କିଛି ଖାଇଥିବେ, କିଛି ବାଣ୍ଟିଥିବେ, ଆଉ କିଛି ଏଣେତେଣେ ଫିଙ୍ଗି ଦେଇଥିବେ । ପ୍ରତିଦିନ ତ ଏହିପରି ହୋଇଥାଏ ।" ସଞ୍ଜୀବକ କହିଲା, "ତେବେ କଅଣ ଆପଣଙ୍କ ଅଗୋଚରରେ ଏ ସବୁ ହେଉଛି ?" ସିଂହ କହିଲା, "ହଁ, ମୋ ଅଗୋଚରରେ ଏସବୁ ଘଟୁଛି ।" ସଞ୍ଜୀବକ କହିଲା, "କିନ୍ତୁ ଏପରି ହେବା ଉଚିତ ନୁହେଁ । କଥିତ ଅଛି—

ନାନିବେଦ୍ୟ ପ୍ରକୁର୍ବୀତ ଭର୍ତ୍ତୁଃ କିଞ୍ଚିଦପି ସ୍ୱୟମ୍ ।
କାର୍ଯ୍ୟମାପତ୍ପ୍ରତୀକାରାଦନ୍ୟତ୍ର ଜଗତୀପତେଃ । ୯୦ ।

ପ୍ରଭୁଙ୍କୁ ନ ଜଣାଇ ନିଜେ କୌଣସି କାର୍ଯ୍ୟ କରିବା ଅମାତ୍ୟ ପକ୍ଷରେ ଉଚିତ ନୁହେଁ । କେବଳ ବିପଦର ପ୍ରତୀକାର ସ୍ଥଳରେ ସେପରି କରାଯାଇପାରେ । ୯୦ । ପୁଣି—

କମଣ୍ଡଳୂପମୋଽମାତ୍ୟସ୍ତନୁତ୍ୟାଗୋ ବହୁଗ୍ରହଃ ।
ନୃପତେ ! କିଂକ୍ଷଣୋ ମୂର୍ଖୋ ଦରିଦ୍ରଃ କିଂବରାଟକଃ । ୯୧ ।

ହେ ରାଜନ୍, ମନ୍ତ୍ରୀ କମଣ୍ଡଳୁ ପରି ସ୍ୱଳ୍ପବ୍ୟୟୀ କରିବା ଓ ବହୁତ ସଂଗ୍ରହ କରିବା ଉଚିତ । 'ମୂହୂର୍ତ୍ତେ ସମୟ ଗଲେ କି କ୍ଷତି ?' ଏପରି ଯିଏ ବିଚାର କରେ ସେ ମୂର୍ଖ । କଉଡ଼ିଟାଏ ନଷ୍ଟ ହେଲେ କି କ୍ଷତି ? ଏପରି ଯିଏ ବିଚାରକରେ ସେ ଦରିଦ୍ର ହୁଏ । ୯୧ ।

ସ ହ୍ୟମାତ୍ୟଃ ସଦା ଶ୍ରେୟାନ୍
କାକିଣୀଂ ଯଃ ପ୍ରବର୍ଦ୍ଧୟେତ୍
କୋଷଃ କୋଷବତଃ ପ୍ରାଣାଃ
ପ୍ରାଣାଃ ପ୍ରାଣାଃ ନ ଭୂପତେଃ । ୯୨ ।

ଯେଉଁ ମନ୍ତ୍ରୀ କଉଡ଼ିଟିଏ ସୁଦ୍ଧା ସର୍ବଦା ବଢ଼ାଉଥାଏ ସେ ହିତକାରୀ ମନ୍ତ୍ରୀ ବୋଲି ବୁଝିବାକୁ ହେବ । ଧନୀ ଲୋକମାନଙ୍କର ଧନ ହେଉଛି ପ୍ରାଣ । ରାଜାଙ୍କର ପ୍ରାଣ ପ୍ରାଣ ନୁହେଁ; ରାଜକୋଷହିଁ ହେଉଛି ରାଜାଙ୍କର ପ୍ରାଣ । ୯୨ ।

କଂ ଗୁଣୈର୍ନ କୁଳାଚାରୈଃ ସେବ୍ୟତାମେତି ପୁରୁଷଃ ।
ଧନହୀନଃ ସ୍ୱପତ୍ନ୍ୟାପି ତ୍ୟଜ୍ୟତେ କ ପୁନଃ ପରୈଃ । ୯୩ ।

ରାଜା କୁଳାଚାର ହେତୁରୁ ପୂଜା ପାଆନ୍ତି ନାହିଁ; ଅର୍ଥ ହେତୁରୁ ପୂଜିତ ହୋଇଥାନ୍ତି । ଧନହୀନ ପୁରୁଷକୁ ନିଜର ପତ୍ନୀ ସୁଦ୍ଧା ତ୍ୟାଗ କରିଥାଏ । ଅନ୍ୟମାନଙ୍କ କଥା କିଏ ପଚାରେ ? ୯୩ ।

ପୁଣି ରାଜାମାନଙ୍କ ପକ୍ଷରେ କେତୋଟି ଦୋଷ ବୋଲି ଗଣ୍ୟ ହୁଏ ।

ଅତିବ୍ୟୟୋଽନପେକ୍ଷା ଚ ତଥାର୍ଜନମଧର୍ମତଃ ।
ମୋକ୍ଷଣଂ ଦୂରସଂସ୍ଥାନାଂ କୋଷବ୍ୟସନମୁଚ୍ୟତେ । ୯୪ ।

ଅତ୍ୟଧିକ ବ୍ୟୟ, ନିରୀକ୍ଷାର ଅଭାବ, ଅନ୍ୟାୟରେ ଧନ ଅର୍ଜନ, ଦୂର ସ୍ଥାନରେ ଧନର ରକ୍ଷଣ ଓ ତ୍ୟାଗ—ଏଗୁଡ଼ିକ ରାଜ-କୋଷର ଦୋଷ ବୋଲି କୁହାଯାଏ । ୯୪ ।

କ୍ଷିପ୍ରମାୟମନାଲୋଚ୍ୟ ବ୍ୟୟମାନଃ ସ୍ୱବାଞ୍ଛୟା
ପରିକ୍ଷୀୟତ ଏବାସୌ ଧନୀ ବୈଶ୍ରବଣୋପମଃ । ୯୫ ।

ତାହାଙ୍କ ଆୟପ୍ରତି ଦୃଷ୍ଟି ନ ଦେଇ ଇଚ୍ଛା ଅନୁସାରେ କେବଳ ବ୍ୟୟ କଲେ କୁବେରସଦୃଶ ଧନୀଲୋକ ମଧ୍ୟ ଧୀରେ ଧୀରେ ନିର୍ଦ୍ଧନ ହୋଇଯାଏ ।" ୯୫ ।

ସ୍ତବ୍ଧକର୍ଣ୍ଣ କହିଲା, "ଭାଇ, ମୋ କଥା ଶୁଣ । ଦମନକ ଓ କରଟକ ଏ ଦୁହେଁ ପୁରାତନ ଭୃତ୍ୟ । ଏମାନଙ୍କୁ ସନ୍ଧି-ବିଗ୍ରହ ଅଧିକାର

ଦିଆଯାଇଅଛି । ଅର୍ଥବିଷୟକ ଅଧିକାର ଏମାନଙ୍କୁ ଦେବା କଦାପି ଉଚିତ ନୁହେଁ । ନିଯୁକ୍ତ ବିଷୟରେ ମୁଁ ଯାହା ଶୁଣିଛି, ତାହା କହୁଅଛି ।

ବ୍ରାହ୍ମଣଃ କ୍ଷତ୍ରିୟୋ ବନ୍ଧୁର୍ନାଧିକାରେ ପ୍ରଶସ୍ୟତେ ।
ବ୍ରାହ୍ମଣଃ ସିଦ୍ଧମପ୍ୟର୍ଥଂ କୃଚ୍ଛ୍ରେଣାପି ନ ଯଚ୍ଛତି । ୯୬ ।

ନିଯୁକ୍ତଃ କ୍ଷତ୍ରିୟୋ ଦ୍ରବ୍ୟେ ଖଡ୍‌ଗଂ ଦର୍ଶୟତେ ଧ୍ରୁବମ୍ ।
ସର୍ବସ୍ୱଂ ଗ୍ରସତେ ବନ୍ଧୁଃସ୍ୱକସ୍ୟ ଜ୍ଞାତିଭାବତଃ । ୯୭ ।

ବ୍ରାହ୍ମଣ, କ୍ଷତ୍ରିୟ ଓ ବନ୍ଧୁ ଏମାନଙ୍କୁ ଅର୍ଥର ଅଧିକାରରେ ନିଯୁକ୍ତ କରିବା ଠିକ୍ ନୁହେଁ; କାରଣ ବ୍ରାହ୍ମଣ ସଞ୍ଚିତ ଧନକୁ ଆପଦବେଳେ ସୁଦ୍ଧା ଦିଏ ନାହିଁ । କ୍ଷତ୍ରିୟ ଅର୍ଥାଧିକାରୀ ହେଲେ ସାମାନ୍ୟ କଥାରେ ଖଣ୍ଡା ଉଠାଇବ । ଆଉ ଯାଇ ବନ୍ଧୁ ସେହି ଅଧି-କାରରେ ରହିଲେ ଜ୍ଞାତିଭାବର ସୁଯୋଗ ନେଇ ସବୁ ଗ୍ରାସ କରିଯିବେ । ୯୬-୯୭ ।

ଅପରାଧେଽପି ନିଃଶଙ୍କୋ ନିୟୋଗୀ ଚିରସେବକଃ ।
ସ ସ୍ୱାମିନମବଜ୍ଞାୟ ଚରେଚ୍ଚ ନିରବଗ୍ରହଃ । ୯୮ ।

ପୁରାତନ ଭୃତ୍ୟ ଅପରାଧ କଲେ ମଧ୍ୟ ନିର୍ଭୟ ରହି ପ୍ରଭୁଙ୍କର ଅବମାନନା କରି ଯଥେଚ୍ଛା ଆଚରଣ କରିଥାଏ । ୯୮ ।

ଉପକର୍ତ୍ତାଧିକାରସ୍ଥଃ ସ୍ୱାପରାଧଂ ନ ମନ୍ୟତେ ।
ଉପକାରଂ ଧ୍ୱଜୀକୃତ୍ୟ ସର୍ବମେବାବଲୁମ୍ପତି । ୯୯ ।

ପ୍ରଭୁଙ୍କର ଉପକାର କରିଥିବା ସେବକ ଅର୍ଥାଧିକାରରେ ରହିଲେ ନିଜର ଅପରାଧକୁ ସ୍ୱୀକାର କରେ ନାହିଁ ଏବଂ ପୂର୍ବର ଉପକାରକୁ ପତାକାରୂପେ ଉଡ଼ାଇ ସବୁ ନଷ୍ଟ କରିଦିଏ । ୯୯ ।

ଉପାଂଶୁକ୍ରୀଡ଼ତୋଽମାତ୍ୟଃ ସ୍ୱୟଂ ରାଜାୟତେ ଯତଃ ।
ଅବଜ୍ଞା କ୍ରିୟତେ ତେନ ସଦା ପରେଚୟାଦ୍ ଧ୍ରୁବମ୍ । ୧୦୦ ।

ଯେଉଁ ଅମାତ୍ୟ ରାଜାଙ୍କ ସାଥିରେ କ୍ରୀଡ଼ାକରେ, ସେ ନିଜକୁ ରାଜା ବୋଲି ମନେ କରି ଅତି ପରିଚୟ ହେତୁ ରାଜାଙ୍କୁ ଅବଜ୍ଞା କରିଥାଏ । ୧୦୦ ।

ଅନ୍ତର୍ଦୁଷ୍ଟଃ କ୍ଷମାଯୁକ୍ତଃ ସର୍ବାନର୍ଥକରଃ କିଲ ।
ଶକୁନିଃ ଶକଟାରଶ୍ଚ ଦୃଷ୍ଟାନ୍ତାବତ୍ର ଭୂପତେ । ୧୦୧ ।

ଯେଉଁ ଅମାତ୍ୟର ଅନ୍ତର ଦୁଷ୍ଟ, କିନ୍ତୁ ଯେ ବାହାରେ କ୍ଷମା-ଶୀଳ ବୋଲି ଦେଖାଇ ହୁଏ, ସେ ସକଳ ଅନର୍ଥର କାରଣ ହୁଏ । ଦୁର୍ଯୋଧନଙ୍କ ମାତୁଳ ଶକୁନି ଓ ନନ୍ଦରାଜଙ୍କ ମନ୍ତ୍ରୀ ଶକଟାର ଏହାର ଦୃଷ୍ଟାନ୍ତ । ୧୦୧ ।

ସଦାମାତ୍ୟୋ ନ ସାଧ୍ୟଃ ସ୍ୟାତ୍ ସମୃଦ୍ଧଃ ସର୍ବ ଏବ ହି ।
ସିଦ୍ଧାନାମୟମାଦେଶ ଋଦ୍ଧିଶ୍ଚିତ୍ତବିକାରିଣୀ । ୧୦୨ ।

ମନ୍ତ୍ରୀ ବିଭବଶାଳୀ ହେଲେ ସେ କେବେହେଲେ ବଶୀଭୂତ ହୋଇପାରେ ନାହିଁ । ସିଦ୍ଧମାନେ ଉପଦେଶ ଦେଇଅଛନ୍ତି—ଧନ ଅବଶ୍ୟ ମନରେ ବିକାର ଜାତ କରେ । ୧୦୨ ।

ପ୍ରାପ୍ତାର୍ଥଗ୍ରହଣଂ ଦ୍ରବ୍ୟପରୀବର୍ତ୍ତୋଽନୁରୋଧନମ୍ ।
ଉପେକ୍ଷା ବୁଦ୍ଧିହୀନତ୍ୱଂ ଭୋଗୋଽମାତ୍ୟସ୍ୟ ଦୂଷଣମ୍ । ୧୦୩ ।

ପ୍ରାପ୍ତ ରାଜଧନକୁ ନିଜେ ନେଇଯିବା, ବହୁମୂଲ୍ୟ ଦ୍ରବ୍ୟ ନେଇ ତତ୍ପରିବର୍ତ୍ତେ ସ୍ୱଳ୍ପମୂଲ୍ୟ ଦ୍ରବ୍ୟ ରଖିବା, (ବନ୍ଧକ ରଖି କରଜ ଦେବା) ରାଜାଙ୍କ ଉପରେ ଚାପ ପ୍ରୟୋଗ କରିବା, ଉପେକ୍ଷା

ପ୍ରଦର୍ଶନ, ବୁଦ୍ଧିହୀନତା ଓ ବିଷୟାସକ୍ତି—ଏଗୁଡ଼ିକ ଅମାତ୍ୟ ପକ୍ଷରେ ଦୋଷାବହ । ୧୦୩ ।

ନିୟୋଗ୍ୟର୍ଥଗ୍ରହୋପାୟୋ ରାଜ୍ଞା ନିତ୍ୟ ପରୀକ୍ଷଣମ୍
ପ୍ରତିପତ୍ତିପ୍ରଦାନଂ ଚ ତଥା କର୍ମବିପର୍ଯ୍ୟୟଃ । ୧୦୪ ।

ନିଯୁକ୍ତିପ୍ରାପ୍ତ ରାଜସେବକଠାରୁ ଧନ ଗ୍ରହଣ କରିବାର ଉପାୟମାନ ହେଉଛି—ରାଜା ନିଜେ ସବୁ ବିଭାଗର କାର୍ଯ୍ୟ ପରୀକ୍ଷା-କରି ଦେଖିବେ, ଉତ୍ତମ କାର୍ଯ୍ୟ ନିମନ୍ତେ ଭୃତ୍ୟକୁ ପୁରସ୍କାର ଦେବେ ବା ବେତନରେ ଉନ୍ନତି କରିବେ ଓ କର୍ମଚାରୀମାନଙ୍କର ବିଭାଗ ପରିବର୍ତ୍ତନ କରିବେ । ୧୦୪ ।

ନିପୀଡ଼ିତା ବମନ୍ତ୍ୟୁଚ୍ଚୈରନ୍ତଃସାରଂ ମହୀପତେଃ ।
ଦୁଷ୍ଟବ୍ରଣା ଇବ ପ୍ରାୟୋ ଭବନ୍ତି ହି ନିୟୋଗିନଃ । ୧୦୫ ।

ସାଧାରଣତଃ ଏପରି ଅନେକ କର୍ମଚାରୀ ଥାଆନ୍ତି, ଯେଉଁମାନେ କି କଷ୍ଟ ପାଇଲେ ରାଜାଙ୍କର ଗୁପ୍ତ କଥାସବୁ ପଦାରେ ପ୍ରକାଶ କରିଦିଅନ୍ତି । ଏଭଳି କର୍ମଚାରୀ ଶରୀରର ଦୁଷ୍ଟବ୍ରଣ ସଦୃଶ । ୧୦୫ ।

ମୁହୁର୍ନିୟୋଗିନୋ ବାଧ୍ୟା ବସୁଧାରା ମହୀପତେ ।
ସକୃତ୍‌କିଂ ପୀଡ଼ିତଂ ସ୍ନାନବସ୍ତ୍ରଂ ମୁଞ୍ଚେଦ୍‌ଧୃତଂ ପୟଃ । ୧୦୬ ।

ହେ ରାଜନ୍, ସେବକମାନଙ୍କୁ ଥରେ ନୁହେଁ, ବାରମ୍ବାର ଦାବି ରଖିବାକୁ ହେବ । ଦେଖ, ଓଦା ଲୁଗାକୁ ଥରେ ମାତ୍ର ଚିପୁଡ଼ି ଦେଲେ ସବୁ ପାଣି ବାହାରି ଯାଏ କି ? ୧୦୬ ।

ଏହି ସବୁ ବିଚାର କରି ସୁବିଧା ଅନୁସାରେ ରାଜା କାର୍ଯ୍ୟ କରିବା ଉଚିତ ।”

ପିଙ୍ଗଳକ କହିଲା, "ସେ କଥା ଠିକ୍, କିନ୍ତୁ ଏ ଦୁହେଁ ମୋର କଥା ମାନୁନାହାନ୍ତି ।"

ସ୍ତବ୍ଧକର୍ଣ୍ଣ କହିଲା, "ଏ ସବୁ ବଡ଼ ଅନ୍ୟାୟ; କାରଣ—

ଆଜ୍ଞାଭଙ୍ଗକରାନ୍ ରାଜା ନ କ୍ଷମେତ୍ ସ୍ୱସୁତାନପି ।
ବିଶେଷଃ କୋ ନୁ ରାଜ୍ଞଶ୍ଚ ରାଜ୍ଞଶ୍ଚିତ୍ରଗତସ୍ୟ ଚ । ୧୦୭ ।

ଆଦେଶ ଭଙ୍ଗ କଲେ ରାଜା ନିଜ ପୁତ୍ରମାନଙ୍କୁ ମଧ୍ୟ କ୍ଷମା ଦେବା ଉଚିତ ନୁହେଁ । ତାହା କରି ନ ପାରିଲେ ରାଜା ଓ ରାଜାଙ୍କ ଛବି ମଧ୍ୟରେ କି ପ୍ରଭେଦ ଅଛି ? ୧୦୭ ।

ସ୍ତବ୍ଧସ୍ୟ ନଶ୍ୟତି ଯଶୋ ବିଷମସ୍ୟ ମୈତ୍ରୀ
ନଷ୍ଟେନ୍ଦ୍ରିୟସ୍ୟ କୁଳମର୍ଥପରସ୍ୟ ଧର୍ମଃ ।
ବିଦ୍ୟାଫଳଂ ବ୍ୟସନିନଃ କୃପଣସ୍ୟ ସୌଖ୍ୟଂ
ରାଜ୍ୟଂ ପ୍ରମତ୍ତସଚିବସ୍ୟ ନରାଧିପସ୍ୟ । ୧୦୮ ।

ଅଳସ ବ୍ୟକ୍ତିର ଯଶ, ଅବିଶ୍ୱାସୀ ଲୋକର ମୈତ୍ରୀ, ଇନ୍ଦ୍ରିୟାଧୀନ ଲୋକର କୁଳମର୍ଯ୍ୟାଦା, ଧନଲୋଭୀ ବ୍ୟକ୍ତିର ଧନ, ବ୍ୟସନୀ ବ୍ୟକ୍ତିର ବିଦ୍ୟା, କୃପଣ ବ୍ୟକ୍ତିର ସୁଖ ଓ ଉଦ୍ଧତ ଅମାତ୍ୟସେବିତ ରାଜା—ଏମାନେ ଶୀଘ୍ର ବିନାଶପ୍ରାପ୍ତ ହୋଇଥାନ୍ତି । ୧୦୮ ।

ତସ୍କରେଭ୍ୟୋ ନିଯୁକ୍ତେଭ୍ୟଃ ଶତ୍ରୁଭ୍ୟୋ ନୃପବଲ୍ଲଭାତ୍ ।
ନୃପତିର୍ନିଜଲୋଭାଚ୍ଚ ପ୍ରଜା ରକ୍ଷେତ୍ ପିତେବ ହି । ୧୦୯ ।

ଚୋରର, କର୍ମଚାରୀ, ଶତ୍ରୁ, ନିଜର ପ୍ରିୟଜନ, ତଥା ନିଜର ଲୋଭଠାରୁ ରାଜା ପ୍ରଜାମାନଙ୍କୁ ପିତୃତୁଲ୍ୟ ରକ୍ଷା କରିବା ଉଚିତ । ୧୦୯ ।

ଯାଇ, ତୁମେ ମୋ ପରାମର୍ଶ ମାନି କାମ କର । ମୁଁ ବିଷୟଟି ବିଚାର କରି ଦେଖିଛି । ଏ ସଞ୍ଜୀବକ ହେଉଛି ଶସ୍ୟଭୋଜୀ ପ୍ରାଣୀ । ତାକୁ ଅର୍ଥ ବିଭାଗରେ ନିଯୁକ୍ତ କର ।"

ସ୍ତବ୍‌ଧକର୍ଣ୍ଣର କଥା ଅନୁସାରେ ତାହାହିଁ କରାଗଲା । ସେହିଦିନଠାରୁ ପିଙ୍ଗଳକ ଓ ସଞ୍ଜୀବକ ସବୁବନ୍ଧୁଙ୍କ ଦ୍ୱାରା ପରିତ୍ୟକ୍ତ ହେଲେହେଁ ସେ ଦୁହେଁ ପରମ ସ୍ନେହରେ କାଳ କଟାଇବାକୁ ଲାଗିଲେ ।

ଏହାପରେ ଭୃତ୍ୟମାନଙ୍କୁ ଆହାର ଦେବାରେ ଅବହେଳା ଘଟୁଥିବା ଦେଖି ଦମନକ ଓ କରଟକ ଆପଣାଭିତରେ ବିଚାର କଲେ । ଦମନକ କହିଲା, "ମିତ୍ର କରଟକ, ଏବେ କଅଣ କରିବା ? ଏ ଅବସ୍ଥା ଆମେ ହିଁ ସୃଷ୍ଟି କରିଥାଏଁ । ଆତ୍ମକୃତ ଦୋଷପାଇଁ ଅନୁତାପ ମଧ୍ୟ କରିବା ଅନୁଚିତ । ଏ ବିଷୟରେ ଗୋଟିଏ କଥା ଅଛି ।

ସ୍ୱର୍ଣ୍ଣରେଖାମହଂ ସ୍ପୃଷ୍ଟ୍ୱା
ବଦ୍‌ଧ୍ୱାତ୍ମାନଂ ଚ ଦୂତିକା ।
ଆଦିତ୍ସୁଶ୍ଚ ମଣିଂ ସାଧୁଃ
ସ୍ୱଦୋଷାଦ୍ ଦୁଃଖିତା ଇମେ । ୧୧୦ ।

ମୁଁ ସ୍ୱର୍ଣ୍ଣରେଖା ସ୍ପର୍ଶ କରି, ଦୂତୀ ନିଜେ ନିଜକୁ ବନ୍ଧନ କରି ଓ ସାଧୁ ରତ୍ନ ନେବାକୁ ଲୋଭ କରି—ଆମେ ତିନିଜଣଯାକ ନିଜ ଦୋଷରୁ ଦୁଃଖଭୋଗ କଲୁ ।" ୧୧୦ ।

କରଟକ ପଚାରିଲା, "ସେ କଥାଟି କଅଣ ?" ଦମନକ କହିବାକୁ ଲାଗିଲା ।

## କଥା-୫

କାଞ୍ଚନପୁର ନାମକ ନଗରରେ ବୀରବିକ୍ରମ ବୋଲି ଜଣେ ରାଜା ଥିଲେ । ତାହାଙ୍କର ବିଚାରପତିଙ୍କ ଆଦେଶରେ ଜଣେ ନାପିତକୁ ବଧଭୂମିକୁ ନିଆଯାଉଥିଲା । ଏହି ସମୟରେ ଜଣେ ସାଧୁଙ୍କ ସହିତ କନ୍ଦର୍ପକେତୁ ନାମକ ଜଣେ ସନ୍ନ୍ୟାସୀ ଆସି 'ଏ ବଧର ଯୋଗ୍ୟ ନୁହେଁ' ବୋଲି କହି ତାହାକୁ ନିଜର ବସ୍ତ୍ରରେ ଘୋଡ଼ାଇ ଦେଲେ । ରାଜପୁରୁଷମାନେ କହିଲେ, "କାହିଁକି ଏ ବଧର ଯୋଗ୍ୟ ନୁହେଁ ?" ସନ୍ନ୍ୟାସୀ କହିଲେ, "ମୁଁ ସ୍ୱର୍ଣ୍ଣରେଖା ସ୍ପର୍ଶକରି, ଦୂତୀ ନିଜେ ନିଜକୁ ବନ୍ଧନ କରି ଓ ସାଧୁ ରତ୍ନ ନେବାକୁ ଲୋଭ କରି—ଆମେ ତିନି ଜଣଯାକ ନିଜ ନିଜ ଦୋଷରୁ ଦୁଃଖ ପାଇଲୁ ।" ତହୁଁ ରାଜପୁରୁଷମାନେ ପଚାରିଲେ, "କିପରି ଏହା ଘଟିଲା ?" ସନ୍ନ୍ୟାସୀ କହିଲେ, "ମୋର ନାମ କନ୍ଦର୍ପକେତୁ; ମୁଁ ହେଉଛି ସିଂହଳଦ୍ୱୀପର ରାଜା ଜୀମୂତକେତୁଙ୍କର ପୁତ୍ର । ଏକଦା କେଳି କାନନରେ ଥିବା ସମୟରେ ମୁଁ ପୋତବଣିକମାନଙ୍କ ମୁଖରୁ ଶୁଣିଲି—ସମୁଦ୍ର ମଧ୍ୟରେ ଗୋଟିଏ ସ୍ଥାନ ଅଛି, ସେଠାରେ ଚତୁର୍ଦ୍ଦଶୀ ଦିନ କଳ୍ପତରୁର ଆବିର୍ଭାବ ହୁଏ । ସେହି ବୃକ୍ଷତଳରେ ବିବିଧରତ୍ନ ଖଚିତ ବିଚିତ୍ର ପଲଙ୍କ ଉପରେ ସର୍ବାଳଙ୍କାରଭୂଷିତା ଲକ୍ଷ୍ମୀସ୍ୱରୂପା ଏକ ସୁନ୍ଦରୀ ରମଣୀ ବୀଣା ବଜାଉ ଥିବାର ଦେଖାଯାଏ । ଏହା ଶୁଣି ମୁଁ ନୌବାଣିଜ୍ୟର ଉପଯୁକ୍ତ ପଣ୍ୟ-ଦ୍ରବ୍ୟ ସଂଗ୍ରହ କରି ବୋଇତରେ ବସି ସେଠାକୁ ଗଲି । ଏହାପରେ ସେଠାରେ ପଲଙ୍କ ଉପରେ ଆଉଜି ଶୋଇଥିବା ସେହି ରମଣୀଙ୍କୁ ମୁଁ ଦେଖିଲି । ତାଙ୍କ ରୂପଲାବଣ୍ୟରେ ଆକୃଷ୍ଟ ହୋଇ ମୁଁ ବୋଇତରୁ ତାଙ୍କ ପାଖକୁ ଡେଇଁ ପଡ଼ିଲି । ଏହାପରେ ମୁଁ ସୁବର୍ଣ୍ଣପୁରୀରେ ପହଞ୍ଚି ସୁବର୍ଣ୍ଣ ପ୍ରାସାଦରେ ସେହିପରି ପଲଙ୍କ ଉପରେ ଉପବିଷ୍ଟା ତଥା ବିଦ୍ୟାଧରୀମାନଙ୍କ ଦ୍ୱାରା ସେବିତା ସେହି କନ୍ୟାଙ୍କୁ ଦେଖିଲି ।

ସେ ମଧ୍ୟ ଦୂରରୁ ମୋତେ ଦେଖିପାରି ସଖୀମାନଙ୍କଦ୍ୱାରା ଆଦରରେ ଡକାଇନେଇ ମୋ ସଙ୍ଗେ କଥାବାର୍ତ୍ତା କଲେ । ସଖୀମାନଙ୍କୁ ପଚାରିବାରୁ ସେମାନେ କହିଲେ, "ଏ ହେଉଛନ୍ତି କନ୍ଦର୍ପକେଳି ନାମକ ବିଦ୍ୟାଧରରାଜାଙ୍କର କନ୍ୟା । ଏହାଙ୍କର ନାମ ରତ୍ନମଞ୍ଜରୀ । ସେ ଗୋଟିଏ ପ୍ରତିଜ୍ଞା କରି ଏଠାରେ ବାସ କରୁଅଛନ୍ତି । ତାଙ୍କ ମନର ସଂକଳ୍ପ ହେଉଛି, ଯେଉଁ ପୁରୁଷ ଆସି ନିଜ ଆଖିରେ ଏହି ସୁବର୍ଣ୍ଣ ପୁରୀକୁ ଦେଖିବେ, ସେ ତାଙ୍କ ପିତାଙ୍କ ଅଗୋଚରରେ ହେଲେ ମଧ୍ୟ ତାଙ୍କୁ ହିଁ ବିବାହ କରିବେ । ତେଣୁ ଆପଣ ତାଙ୍କୁ ଗାନ୍ଧର୍ବ ବିଧିରେ ବିବାହ କରନ୍ତୁ ।"

ଏହାପରେ ଗାନ୍ଧର୍ବ ବିବାହ କରି ତାଙ୍କ ସହିତ ବିହାରପୂର୍ବକ ମୁଁ ସେଠାରେ ରହିଲି । ଦିନେ ସେ ମୋତେ ଏକାନ୍ତରେ କହିଲେ, "ସ୍ୱାମିନ୍, ଆପଣ ନିଜ ଇଚ୍ଛା ଅନୁସାରେ ଏଠାରେ ଥିବା ସବୁ ଦ୍ରବ୍ୟ ଉପଭୋଗ କରନ୍ତୁ, କେବଳ ଏହି ଚିତ୍ରରେ ଥିବା ସ୍ୱର୍ଣ୍ଣରେଖା ନାମକ ବିଦ୍ୟାଧରୀକୁ କେବେହେଲେ ସ୍ପର୍ଶ କରିବେ ନାହିଁ । ଏହାପରେ ମୋର କୌତୂହଳ ହେତୁ ମୁଁ ନିଜ ହାତରେ ଚିତ୍ରର ସେହି ସ୍ୱର୍ଣ୍ଣରେଖାକୁ ସ୍ପର୍ଶ କରିଦେଲି । ତତ୍‌କ୍ଷଣାତ୍ ଚିତ୍ରର ସେହି ସ୍ୱର୍ଣ୍ଣରେଖା ମୋତେ ତାର ପାଦପଦ୍ମରେ ପ୍ରହାର କଲା ଓ ମୁଁ ଆସି ନିଜ ରାଜ୍ୟରେ ପଡ଼ିଲି । ଦୁଃଖରେ ମୁଁ ସନ୍ନ୍ୟାସୀହୋଇ ପୃଥିବୀ ପରିଭ୍ରମଣ କରୁକରୁ ଏହି ନଗରରେ ପହଞ୍ଚିଲି । କାଲି ମୁଁ ଏଠାରେ ଜଣେ ଗୋପାଳର ଗୃହରେ ଶୋଇଥିଲା ବେଳେ ଦେଖିଲି ଯେ ସନ୍ଧ୍ୟା-ବେଳକୁ ଗୋପାଳ ଗୋରୁମାନଙ୍କ କାର୍ଯ୍ୟ ସାରି ନିଜ ଘରକୁ ଆସିଲା । ସେ ଦେଖିଲା, ତାହାର ସ୍ତ୍ରୀ ଜଣେ ଦୂତୀ ସହିତ କିଛି ମନ୍ତ୍ରଣା କରୁଅଛି । ତହୁଁ ଗୋପାଳ ତାର ସ୍ତ୍ରୀକୁ ପ୍ରହାର କରି ତାକୁ

ଗୋଟାଏ ଖମ୍ବରେ ବାନ୍ଧି ଦେଇ ଶୋଇବାକୁ ଗଲା । ଏହାପରେ ଅର୍ଦ୍ଧରାତ୍ର ସମୟରେ ନାପିତର ପତ୍ନୀ ସେହି ଦୂତି ଗୋପାଳୁଣୀ ପାଖକୁ ଆସି କହିଲା, "ତୁମର ବିରହାନଳରେ ଦଗ୍ଧ ଓ କନ୍ଦର୍ପ ପୀଡ଼ାରେ ଜର୍ଜରିତ ହୋଇ ସେ ମୁମୂର୍ଷୁ ଅବସ୍ଥାରେ ପଡ଼ିଅଛନ୍ତି । କଥିତ ଅଛି—

ରଜନୀଚରନାଥେନ ଖଣ୍ଡିତେ ତିମିରେ ନିଶି ।
ଯୂନାଂ ମନାଂସି ବିବ୍ୟାଧ ଦୃଷ୍ଟ୍ୱାଦୃଷ୍ଟ୍ୱା ମନୋଭବଃ । ୧୧୧ ।

ଚନ୍ଦ୍ରଙ୍କର କିରଣ ଦ୍ୱାରା ରାତ୍ରିର ଅନ୍ଧକାର ଦୂର ହୋଇଯିବାରୁ କନ୍ଦର୍ପ ଯୁବକମାନଙ୍କର ହୃଦୟକୁ ଦେଖି ଦେଖି ବିଦ୍ଧ କଲା । ୧୧୧ ।

ତାଙ୍କର ଏଭଳି ଅବସ୍ଥା ଦେଖି ମୁଁ ପୁଣି ତୁମକୁ ମନାଇବା ପାଇଁ ଆସିଛି । ତୁମ ପରିବର୍ତ୍ତେ ମୁଁ ଏଠାରେ ନିଜକୁ ସ୍ତମ୍ଭରେ ବାନ୍ଧି ରହିବି । ତୁମେ ସେଠାକୁ ଯାଇ ତାଙ୍କୁ ସନ୍ତୁଷ୍ଟ କରି ଶୀଘ୍ର ଫେରି ଆସିବ ।" ଦୁହେଁ ସେହିପରି କଲେ । ନାପିତୁଣୀ ସ୍ତମ୍ଭରେ ବାନ୍ଧି ହୋଇ ରହିଲା ଓ ଗୋପାଳୁଣୀ ଚାଲିଗଲା । ଏହି ସମୟରେ ଗୋପାଳ ନିଦରୁ ଉଠି ସ୍ତମ୍ଭ ପାଖକୁ ଯାଇ କହିଲା, "ପାପିଷ୍ଠା, ଚାଲ, ତୋତେ ତୋର ଜାରପୁରୁଷ ପାଖକୁ ନେବି ।" କିନ୍ତୁ କୌଣସି ଉତ୍ତର ନ ପାଇବାରୁ ସେ କ୍ରୁଦ୍ଧ ହୋଇ କହିଲା, "ତୋର ଏତେ ଗର୍ବ ଯେ ମୋ କଥାର ଉତ୍ତର ସୁଦ୍ଧା ଦେଉ ନାହୁଁ ।" ଏହା କହି ସେ କଟୁରୀ ଆଣି ତାର ନାକଟିକୁ କାଟିଦେଲା ଏବଂ ଘରକୁ ଯାଇ ପୁଣି ନିଦରେ ଶୋଇପଡ଼ିଲା । ଏଣେ ଗୋପାଳୁଣୀ ଫେରି ଆସି ଦୂତୀକୁ ପଚାରିଲା, "ଖବର କଅଣ ?" ଦୂତୀ ନାପିତୁଣୀ କହିଲା, "ମୋ ମୁହଁକୁ ଦେଖିଲେ ଖବର ଜାଣି ପାରିବ ।" ଏହାପରେ ଗୋପାଳୁଣୀ ନିଜକୁ ଖମ୍ବରେ ବାନ୍ଧି ରହିଲା ଓ କଟାହୋଇ ପଡ଼ିଥିବା ନାକଟିକୁ ଧରି ନାପିତୁଣୀ ନିଜ ଘରକୁ ଚାଲିଗଲା । ସକାଳକୁ ନାପିତ ତାର ସ୍ତ୍ରୀକୁ

ନିଜର କ୍ଷୁରମୁଣ୍ଡି ମାଗିଲା, କିନ୍ତୁ ସେ ଗୋଟିଏ ମାତ୍ର କ୍ଷୁର ଦେଲା । ପୂରା କ୍ଷୁରମୁଣ୍ଡିଟି ନ ପାଇ ନାପିତ କ୍ରୁଦ୍ଧ ହୋଇ ଦୂରରୁ ସେହି କ୍ଷୁରଟିକୁ ଘର ଭିତରକୁ ଫିଙ୍ଗିଦେଲା । ତହୁଁ ନାପିତୁଣୀ କାନ୍ଦି କାନ୍ଦି କହିଲା, "ବିନା ଦୋଷରେ ଏ ମୋର ନାକ କାଟି ଦେଲା ।" ଏହିପରି କହି କହି ନାପିତୁଣୀ ବିଗୃହାଳୟକୁ ଗଲା ।

ଗୋପାଳୁଣୀକୁ ଗୋପାଳ ପଚାରିବାରୁ ସେ କହିଲା, "ଆରେ ପାପିଷ୍ଠ, ମୋ ଭଳି ସତୀନାରୀର ସୌନ୍ଦର୍ଯ୍ୟକୁ କିଏ ନଷ୍ଟ କରି ପାରନ୍ତା ? ମୋର ଚରିତ୍ର ନିଷ୍କଳଙ୍କ; ଏକଥା ଅଷ୍ଟଦିଗପାଳ ଜାଣନ୍ତି । କଥିତ ଅଛି—

ଆଦିତ୍ୟଚନ୍ଦ୍ରାବନିଲୋଽନଲଶ୍ଚ
ଦ୍ୟୌର୍ଭୂମିରାପୋ ହୃଦୟଂ ଯମଶ୍ଚ ।
ଅହଶ୍ଚ ରାତ୍ରିଶ୍ଚ ଉଭେ ଚ ସନ୍ଧ୍ୟେ
ଧର୍ମଶ୍ଚ ଜାନାତି ନରସ୍ୟ ବୃତ୍ତମ୍ । ୧୧୨ ।

ସୂର୍ଯ୍ୟ, ଚନ୍ଦ୍ର, ବାୟୁ, ଅନଳ, ଆକାଶ, ପୃଥ୍ୱୀ, ଜଳ, ହୃଦୟ, ଯମ, ଦିବା, ରାତ୍ରି, ଦୁଇସନ୍ଧ୍ୟା (ପ୍ରଭାତ ଓ ପ୍ରଦୋଷ) ଓ ଧର୍ମ— ଏମାନେ ମନୁଷ୍ୟର ଭଲ ବା ମନ୍ଦ ଆଚରଣ ଜାଣନ୍ତି । ୧୧୨ ।

ଯଦି ମୁଁ ପରମାସତୀ ହୋଇଥାଏଁ, ତୁମ ବିନା ଅନ୍ୟକୁ ଜାଣି ନ ଥାଏଁ, ଅନ୍ୟ ପୁରୁଷକୁ ସ୍ୱପ୍ନରେ ସୁଦ୍ଧା ଚିନ୍ତା କରି ନ ଥାଏଁ, ତେବେ ମୋର ସେହି ଧର୍ମବଳରେ ଛିନ୍ନ ନାସିକା ଅଛିନ୍ନ ହେଉ । ମୁଁ ତୁମକୁ ଭସ୍ମ କରି ଦେଇ ପାରନ୍ତି, କିନ୍ତୁ ତୁମେ ମୋର ସ୍ୱାମୀ । ଲୋକଭୟରୁ ମୁଁ ତୁମକୁ ଭସ୍ମ କରି ଦେବି ନାହିଁ । ଏବେ ମୋର ମୁଖକୁ ଚାହିଁ ।"

ଗୋପାଳ ଧାପ ଜାଳି ଯେତେବେଳେ ସ୍ତ୍ରୀର ମୁଖକୁ ଚାହିଁ ଅକ୍ଷଣ୍ଡିତ ନାସିକାକୁ ଦେଖିଲା ସେତେବେଳେ ସେ ତାର ପାଦ-ତଳେ ପଡ଼ିଯାଇ କହିଲା, "ତୋ ଭଳି ପରମା ସତୀ ଭାର୍ଯ୍ୟା ପାଇ ମୁଁ ଧନ୍ୟ ।"

ଆଉ ଏ ଯେଉଁ ସାଧୁ, ତାଙ୍କ ବୃତ୍ତାନ୍ତ ମଧ୍ୟ ମୁଁ କହୁଛି ଶୁଣ । ଏ ଘରୁ ବାହାରି ବାର ବର୍ଷଯାଏ ମଳୟପର୍ବତ ନିକଟରେ ରହି ଏହି ନଗରୀକୁ ଆସିଲେ । ଏଠାରେ ସେ ଜଣେ ବେଶ୍ୟାର ଘରେ ଶୋଇ-ଥିଲେ । ବେଶ୍ୟାର କୁଟ୍ଟନୀ ଦ୍ୱାରନିକଟରେ ଗୋଟିଏ କାଷ୍ଠନିର୍ମିତ ବେତାଳମୂର୍ତ୍ତି ରଖିଥିଲା । ମୂର୍ତ୍ତିଟିର ମସ୍ତକ ଉପରେ ଗୋଟିଏ ଉତ୍କୃଷ୍ଟ ମଣି ଥିଲା । ସାଧୁ ଏହାକୁ ଲୋଭ କରି ଆଣିବାକୁ ଗଲେ । ସେ ରତ୍ନରେ ହାତ ଦେଲାକ୍ଷଣି କୁଟ୍ଟନୀ ମୂର୍ତ୍ତିସହିତ ସଂଲଗ୍ନ ସୂତାକୁ ଟାଣି ଦେବାରୁ ବେତାଳ ଦୁଇ ବାହୁରେ ସାଧୁଙ୍କୁ ଚପି ଧରିଲା । ଯନ୍ତ୍-ଣାରେ ସେ ଚୀତ୍କାର କରିବାକୁ ଲାଗିଲେ । ତହୁଁ କୁଟ୍ଟନୀ ଉଠି ଆସି କହିଲା, "ଆରେ ବାପ, ତୁ ମଳୟ ପର୍ବତ ପାଖରୁ ଆସିଛୁ । ସେଠାରୁ ଯେତେକ ରତ୍ନ ଆଣିଛୁ, ସବୁ ଦେଇ ପକା । ତା ନ କଲେ ବେତାଳ ତୋତେ ଛାଡ଼ିବ ନାହିଁ ।" ତହୁଁ ସାଧୁ ସବୁ ରତ୍ନ ଦେବାକୁ ବାଧ୍ୟ ହେଲେ । ଏହିପରି ସେ ସର୍ବସ୍ୱ ହରାଇ ମୋ ସହିତ ମିଳିତ ହୋଇଅଛନ୍ତି ।

ଏହି ସବୁ କଥା ଶୁଣି ରାଜପୁରୁଷମାନେ ଏମାନଙ୍କୁ ବିଚାରାଳୟକୁ ନେଇଗଲେ । ବିଚାରପତି ଗୋପାଳୁଣୀ ଓ ନାପିତୁଣୀକୁ ନଗରରୁ ବାହାର କରିଦେଲେ । ନାପିତ ନିଜ ଘରକୁ ଚାଲିଗଲା । ଏହି ହେତୁରୁ ମୁଁ କହୁଥିଲି—'ମୁଁ ସ୍ୱର୍ଣ୍ଣରେଖା ସ୍ପର୍ଶ କରି—ଇତ୍ୟାଦି ।'

ଆମେ ନିଜେ ଏହା କରିଥାଏଁ । ସେଥିଲାଗି ବିଳାପ କରିବା ଉଚିତ ନୁହେଁ । ଟିକିଏ ଚିନ୍ତା କରି ପୁଣି ଦମନକ କହିଲା, "ମିତ୍ର କରଟକ, ଯେପରି ମୁଁ ପିଙ୍ଗଳକ ଓ ସଞ୍ଜୀବକଙ୍କର ମିତ୍ରତା କରାଇଥିଲି ଏବେ ସେହିପରି ସେ ଦୁହିଁଙ୍କ ଭିତରେ ମୋତେ ମିତ୍ରଭେଦ କରିବାକୁ ହେବ ।" କାରଣ—

ଅତଥ୍ୟାନ୍ୟପି ତଥ୍ୟାନି ଦର୍ଶୟନ୍ତ୍ୟନ୍ତପେଶଳାଃ ।
ସମେ ନିମ୍ନୋନ୍ନତାନୀବ ଚିତ୍ରକର୍ମବିଦୋ ଜନାଃ । ୧୧୩ ।

କୁଶଳୀ ଚିତ୍ରକର ଯେପରି ସମତଳ ଭୂମିକୁ ଚିତ୍ରରେ ଉଚ୍ଚ-ନୀଚ କରି ଦେଖାଇ ଥାଏ, ସେହିପରି ନୀତିଜ୍ଞ ଲୋକେ ମିଥ୍ୟାକୁ ସତ୍ୟ ବୋଲି ପ୍ରମାଣିତ କରି ପାରନ୍ତି । ୧୧୩ । ପୁଣି—

ଉତ୍ପନ୍ନେଷ୍ୱପି କାର୍ଯ୍ୟେଷୁ ମତିର୍ଯସ୍ୟ ନ ହୀୟତେ ।
ସ ନିସ୍ତରତି ଦୁର୍ଗାଣି ଗୋପୀ ଜାରଦ୍ୱୟଂ ଯଥା । ୧୧୪ ।

କାର୍ଯ୍ୟ ଉପସ୍ଥିତ ହେଲେ ଯାହାର ବୁଦ୍ଧି କ୍ଷୀଣ ହୋଇଯାଏ ନାହିଁ, ସେ ଗୋପାଙ୍ଗଣୀ ତାର ଜାର ପୁରୁଷ ଦୁହିଁଙ୍କ ରକ୍ଷା କଲାପରି ନିଜକୁ ସକଳ ବିପଦରୁ ରକ୍ଷା କରିଥାଏ ।" ୧୧୪ ।

କରଟକ ପଚାରିଲା, "ଗୋପାଙ୍ଗଣୀ କିପରି ଜାରପୁରୁଷ ଦୁହିଁଙ୍କୁ ରକ୍ଷା କରିଥିଲା ?" ଦମନକ କହିଲା ।

## କଥା-୭

ଦ୍ୱାରକାନଗରୀରେ ଜଣେ ଗୋପାଳ ବାସ କରୁଥିଲା । ତାର ସ୍ତ୍ରୀ ବ୍ୟଭିଚାରିଣୀ । ସେ ନଗରର କୋଟୁଆଳ ସହିତ ଓ କୋଟୁଆଳର ପୁତ୍ରସହିତ ପାପସଂସର୍ଗ ରଖିଥିଲା । କଥିତ ଅଛି—

ନାଗ୍ନିସ୍ତୃପ୍ୟତି କାଷ୍ଠାନାଂ ନାପଗାନାଂ ମହୋଦଧିଃ ।
ନାନ୍ତକଃ ସର୍ବଭୂତାନାଂ ନ ପୁଂସାଂ ବାମଲୋଚନାଃ । ୧୧୫ ।

ଅଗ୍ନି ଯେତେ କାଠ ପାଇଲେ ହେଁ ତୃପ୍ତ ହୁଏ ନାହିଁ । ଯେତେ ନଦୀ ମିଳିଲେହେଁ ସମୁଦ୍ର ତୃପ୍ତ ହୁଏ ନାହିଁ । ଯମରାଜ ଯେତେ ପ୍ରାଣୀ ଗ୍ରାସ କଲେ ମୁଁଧା ତୃପ୍ତ ହୁଅନ୍ତି ନାହିଁ । ସେହିପରି ନାରୀମାନେ ଯେତେ ପୁରୁଷ ପାଇଲେ ମଧ୍ୟ ସନ୍ତୁଷ୍ଟ ହୁଅନ୍ତି ନାହିଁ । ୧୧୫ । ପୁଣି—

ନ ଦାନେନ ନ ମାନେନ ନାର୍ଜବେନ ନ ସେବୟା
ନ ଶସ୍ତ୍ରେଣ ନ ଶାସ୍ତ୍ରେଣ ସର୍ବଥା ବିଷମାଃ ସ୍ତ୍ରିୟଃ । ୧୧୬ ।

ଦାନ ଦ୍ୱାରା, ସମ୍ମାନ ଦ୍ୱାରା, ସରଳତା ଦ୍ୱାରା, ସେବାଦ୍ୱାରା, ଶସ୍ତ୍ରଦ୍ୱାରା ବା ଶାସ୍ତ୍ରଦ୍ୱାରା କାହିଁରେ ସ୍ତ୍ରୀମାନେ ବଶ ହୁଅନ୍ତି ନାହିଁ । ତେଣୁ ସେମାନେ ସର୍ବଥା ବିଷମ ଅଟନ୍ତି । ୧୧୬ । ଯେହେତୁ—

ଗୁଣାଶ୍ରୟଂ କୀର୍ତ୍ତିଯୁତଂ ଚ କାନ୍ତଂ
ପତିଂ ରତିଜ୍ଞଂ ସଧନଂ ଯୁବାନମ୍ ।
ବିହାୟ ଶୀଘ୍ରଂ ବନିତା ବ୍ରଜନ୍ତି
ନରାନ୍ତରଂ ଶୀଳଗୁଣାଦିହୀନମ୍ । ୧୧୭ ।

ପତି ଗୁଣବାନ୍, ଯଶସ୍ୱୀ, ରୂପବାନ୍, ରତିକୁଶଳ, ଧନବାନ୍, ଯୁବକ ହୋଇଥିଲେ ମଧ୍ୟ ନାରୀମାନେ ତାଙ୍କୁ ତ୍ୟାଗକରି ଗୁଣହୀନ, ଚରିତ୍ରହୀନ ପରପୁରୁଷ ପାଖକୁ ଚାଲିଯାନ୍ତି । ୧୧୭ । ପୁଣି—

ନ ତାଦୃଶୀଂ ପ୍ରୀତିମୁପୈତି ନାରୀ
ବିଚିତ୍ର ଶଯ୍ୟାଂ ଶୟିତାପି କାମମ୍ ।
ଯଥା ହି ଦୂର୍ବାଦିବିକୀର୍ଣ୍ଣଭୂମୌ
ପ୍ରୟାତି ସୌଖ୍ୟଂ ପରକାନ୍ତସଙ୍ଗାତ୍ । ୧୧୮ ।

ପରପୁରୁଷ ସହିତ ତୃଣ ଆଚ୍ଛାଦିତ ଭୂମି ଉପରେ ଶୋଇ ନାରୀ ଯେଉଁ ଆନନ୍ଦ ଅନୁଭବ କରେ, ସ୍ୱାମୀ ସହିତ ଶଯ୍ୟାରେ ଶୋଇ ମଧ୍ୟ ସେପରି ଆନନ୍ଦ ଅନୁଭବ କରେ ନାହିଁ । ୧୧୮ ।

ଦିନେ ସେହି ଗୋପାଳୁଣୀ କୋଟୁଆଳର ପୁଅ ସହିତ ରହିଥିବା ସମୟରେ କୋଟୁଆଳ ଆସି ଉପସ୍ଥିତ ହେଲା । କୋଟୁଆଳ ଆସୁଥିବାର ଦେଖି ଗୋପାଳୁଣୀ କୋଟୁଆଳ ପୁଅକୁ ଧାନ୍ୟ ଭିତରେ ପୂରାଇ ଦେଇ କୋଟୁଆଳ ସହିତ ବସିଲା । ଏହି ସମୟରେ ତାର ସ୍ୱାମୀ ଗୋପାଳ ଗୋଠରୁ ଆସି ପହଞ୍ଚିଲା । ତାହାକୁ ଦେଖି ଗୋପାଳୁଣୀ କୋଟୁଆଳକୁ ଖଣ୍ଡିଏ ବାଡ଼ି ଦେଇ କହିଲା, "ତୁମେ ଏ ବାଡ଼କୁ ହଲାଇ ଖୁବ୍ କ୍ରୋଧ ପ୍ରକାଶ କରି କରି ବାହାରି ଯାଅ ।" ସେ ସେହିପରି ବାଡ଼ି ଧରି ତା ଘରୁ ବାହାରି ଯାଉଥିବାର ଦେଖି ଗୋପାଳ ସ୍ତ୍ରୀକୁ ପଚାରିଲା, "କୋଟୁଆଳ କାହିଁକି ଆମ ଘରକୁ ଆସିଥିଲେ ?" ଗୋପାଳୁଣୀ କହିଲା, "କୋଟୁଆଳ କୌଣସି କାରଣରୁ ପୁଅ ଉପରେ କ୍ରୁଦ୍ଧ ହୋଇ-ଥିଲେ । ପୁଅ ପଳାଇ ଯାଉ ଯାଉ ଆମ ଘରେ ପଶିଗଲା । ମୁଁ ତାକୁ ଧାନ୍ୟ ଭିତରେ ଲୁଚାଇ ରଖି ଦେଲି । କୋଟୁଆଳ ଆସି ପୁଅକୁ ଖୋଜି ନ ପାଇବାରୁ ରାଗ କରି ଚାଲିଗଲେ ।" ଏହା କହି ଗୋପାଳୁଣୀ କୋଟୁଆଳପୁଅକୁ ଧାନ୍ୟ ଭିତରୁ ବାହାର କରି ଆଣି ଦେଖାଇ ଦେଲା । କଥିତ ଅଛି—

ଆହାରୋ ଦ୍ୱିଗୁଣଃ ସ୍ତ୍ରୀଣାଂ ବୁଦ୍ଧିସ୍ତାସାଂ ଚତୁର୍ଗୁଣା ।
ଷଡ଼୍‌ଗୁଣୋ ବ୍ୟବସାୟଶ୍ଚ କାମଶ୍ଚାଷ୍ଟଗୁଣଃ ସ୍ମୃତଃ । ୧୧୯ ।

ପୁରୁଷମାନଙ୍କ ତୁଳନାରେ ନାରୀମାନଙ୍କର ଆହାର ହେଉଛି ଦୁଇ ଗୁଣ, ବୁଦ୍ଧି ହେଉଛି ଚାରି ଗୁଣ, ପରିଶ୍ରମ ହେଉଛି ଛଅ ଗୁଣ ଓ କାମ ପ୍ରବୃତ୍ତି ହେଉଛି ଆଠ ଗୁଣ । ୧୧୯ ।

ସେଥିପାଇଁ ମୁଁ କହୁଥିଲି, କାର୍ଯ୍ୟ ଉପସ୍ଥିତ ହେଲେ ଯାହାର ବୁଦ୍ଧି କ୍ଷୀଣ ହୁଏ ନାହିଁ—ଇତ୍ୟାଦି ।

କରଟକ କହିଲା, "ତାହା ଠିକ୍, କିନ୍ତୁ ସେ ଦୁହିଙ୍କ ଭିତରେ ଗଭୀର ଅକୃତ୍ରିମ ପ୍ରୀତି ଜନ୍ମିଅଛି । ତୁମେ ସେଥିରେ କପରି ଭେଦ ସୃଷ୍ଟି କରିପାରିବ ?"

ଦମନକ କହିଲା—ଉପାୟ କରି ହେବ । କଥିତ ଅଛି—

ଉପାୟେନ ହି ଯଚ୍ଛକ୍ୟଂ ନ ତଚ୍ଛକ୍ୟଂ ପରାକ୍ରମୈଃ
କାକ୍ୟା କନକସୂତ୍ରେଣ କୃଷ୍ଣସର୍ପୋ ନିପାତିତଃ । ୧୨୦ ।

ଯେଉଁ କାର୍ଯ୍ୟ କୌଶଳରେ କରିଯିବାର କଥା, ତାହା ପରାକ୍ରମଦ୍ୱାରା କରିହୁଏ ନାହିଁ । ସାମାନ୍ୟ ବାୟସୀ ସୁନାହାର ସାହାଯ୍ୟରେ କୃଷ୍ଣସର୍ପର ବିନାଶ କରିଇ ପାରିଥିଲା ।

କରଟକ ପଚାରିଲା, "ସେ ବାୟସୀ ଓ କୃଷ୍ଣସର୍ପ କଥା କଅଣ ?" ଦମନକ କହିଲା—

## କଥା-୭

କୌଣସି ଗୋଟିଏ ବୃକ୍ଷରେ ଗୋଟିଏ ବାୟସ ଓ ତାର ଭାର୍ଯ୍ୟା ବାସ କରୁଥିଲେ । ସେହି ବୃକ୍ଷର କୋଟରରେ ଗୋଟିଏ କୃଷ୍ଣସର୍ପ ରହୁଥିଲା । ସେ ବାୟସବାୟସୀଙ୍କର ସନ୍ତାନମାନଙ୍କୁ ଖାଇ ଯାଉଥିଲା । ବାୟସୀ ପୁଣି ଗର୍ଭବତୀ ହେବାରୁ ସେ ସ୍ୱାମୀକୁ କହିଲା, "ନାଥ, ଏ ଗଛକୁ ଛାଡ଼ି ଆମେ ଚାଲିଯିବା ଉଚିତ । ଏ ଗଛରେ

ଥିବା କୃଷ୍ଣ ସର୍ପ ସର୍ବଦା ଆମର ସନ୍ତାନମାନଙ୍କୁ ଖାଇ ଯାଉଅଛି । କଥିତ ଅଛି—

ଦୁଷ୍ଟା ଭାର୍ଯ୍ୟା ଶଠଂ ମିତ୍ରଂ
ଭୃତ୍ୟଶ୍ଚୋତ୍ତରଦାୟକଃ
ସସର୍ପେ ଚ ଗୃହେ ବାସୋ
ମୃତ୍ୟୁରେବ ନ ସଂଶୟଃ । ୧୨୧ ।

ଦୁଷ୍ଟା ଭାର୍ଯ୍ୟା, ଧୂର୍ତ୍ତ ମିତ୍ର, ପ୍ରତ୍ୟୁତ୍ତର ଦେଉଥିବା ଭୃତ୍ୟ ଓ ସର୍ପ ରହୁଥିବା ଗୃହରେ ବାସ—ଏଗୁଡ଼ିକ ହେଉଛି ମୃତ୍ୟୁର କାରଣ; ଏଥିରେ ସଂଶୟ ନାହିଁ ।'' ୧୨୧ ।

ବାୟସ କହିଲା, "ପ୍ରିୟେ, ତୁମେ ଭୟ କରନାହିଁ । ମୁଁ ବାରମ୍ବାର ସେ କୃଷ୍ଣ ସର୍ପର ଅପରାଧ ସହି ଆସିଛି । ଆଉ ଏଣିକି କ୍ଷମା ଦେଇ ପାରିବି ନାହିଁ ।'' ବାୟସୀ କହିଲା, "କୃଷ୍ଣ ସର୍ପ ପରି ବଳବାନ୍ ଶତ୍ରୁ ସହିତ ତୁମେ କପରି ବିବାଦ କରିପାରିବ ?'' ବାୟସ କହିଲା, "ସେପରି ଭୟ କରିବାର କାରଣ ନାହିଁ । ଯେହେତୁ—

ବୁଦ୍ଧିର୍ଯସ୍ୟ ବଳଂ ତସ୍ୟ ନିର୍ବୁଦ୍ଧେସ୍ତୁ କୁତୋ ବଳମ୍
ପଶ୍ୟ ସିଂହୋ ମଦୋନ୍ମତ୍ତଃ ଶଶକେନ ନିପାତିତଃ । ୧୨୨ ।

ଯାହାର ବୁଦ୍ଧି ଥାଏ, ସେ ହେଉଛି ବଳବାନ୍ । ନିର୍ବୋଧର କାହୁଁ ବଳ ଆସିବ ? ଦେଖ, ଗର୍ବୋନ୍ମତ୍ତ ସିଂହକୁ ମଧ୍ୟ ଶଶକ ମାରିଇ ପାରିଥିଲା ।'' ୧୨୨ ।

ବାୟସୀ ହସି ହସି ପଚାରିଲା, "ଶଶକ ସିଂହକୁ କପରି ମାରିଥିଲା ?''

ବାୟସ କହିଲା—

## କଥା-୮

ମନ୍ଦର ନାମକ ପର୍ବତରେ ଦୁର୍ଦ୍ଦାନ୍ତ ବୋଲି ଗୋଟିଏ ସିଂହ ବାସ କରୁଥିଲା । ସେ ସର୍ବଦା ପଶୁମାନଙ୍କୁ ବଧ କରୁଥିଲା । ତହୁଁ ସବୁ ପଶୁ ମିଳି ସିଂହକୁ ଜଣାଇଲେ, "ହେ ମୃଗେନ୍ଦ୍ର, ଆପଣ କାହିଁକି ଏକ ସମୟରେ ବହୁସଂଖ୍ୟକ ପଶୁ ବଧ କରୁଅଛନ୍ତି ? ଯଦି ଆପଣ ଅନୁଗ୍ରହ କରନ୍ତି, ତେବେ ଆମେମାନେ ନିଜେ ଆପଣଙ୍କ ଭୋଜନ ନିମନ୍ତେ ପ୍ରତିଦିନ ଗୋଟିଏ ଲେଖାଏଁ ପଶୁ ଉପହାର ଦେବୁ ।" ତହୁଁ ସିଂହ କହିଲା, "ଯଦି ଏହା ତୁମ୍ଭମାନଙ୍କର ଇଚ୍ଛା, ତେବେ ତାହାହିଁ କରାଯାଉ ।" ସେହି ଦିନଠାରୁ ସିଂହ ପ୍ରତ୍ୟହ ବନ୍ୟ ପଶୁମାନଙ୍କଦ୍ୱାରା ନିର୍ଦ୍ଦିଷ୍ଟ ଗୋଟିଏ ଲେଖାଏଁ ପଶୁ ଖାଇ ରହିଲା । ଥରେ ସିଂହର ଭୋଜନ ନିମନ୍ତେ ଗୋଟିଏ ବୃଦ୍ଧ ଶଶକର ପାଳି ପଡ଼ିଲା । ସେ ମନେ ମନେ ଚିନ୍ତା କଲା—

ହ୍ରାସହେତୋର୍ବିନୀତସ୍ତୁ କ୍ରିୟତେ ଜୀବିତାଶୟା
ପଞ୍ଚତ୍ୱଂ ଚେଦ୍ ଗମିଷ୍ୟାମି କିଂ ସିଂହାନୁନୟେନ ମେ । ୧୨୩ ।

ପ୍ରାଣରକ୍ଷା ଆଶାରେ ଲୋକ ଭୟର କାରଣ ସ୍ୱରୂପ ପ୍ରାଣୀ ନିକଟରେ ବିନୟ ପ୍ରକାଶ କରିଥାଏ । କିନ୍ତୁ ମୋତେ ଯେତେବେଳେ ମରିବାକୁ ହିଁ ହେବ, ସେତେବେଳେ ସିଂହକୁ ଅନୁନୟ ବିନୟ କରିବି କାହିଁକି ? ୧୨୩ ।

ଏହିପରି ଚିନ୍ତା କରି ଶଶକ ଧୀରେ ଧୀରେ ଗଲା । କ୍ଷୁଧାର୍ତ୍ତ ସିଂହ ତାହାକୁ ଦେଖି କ୍ରୋଧରେ ପଚାରିଲା, "ଏତେ ବିଳମ୍ବ କରି ଆସିଲୁ କାହିଁକି ?" ଶଶକ କହିଲା, "ପ୍ରଭୁ, ସେଥିରେ ମୋର ଦୋଷ ନାହିଁ । ବାଟରେ ଆସୁଥିଲା ବେଳେ ଅନ୍ୟ ଗୋଟିଏ ସିଂହ

ମୋତେ ବଳପୂର୍ବକ ଧରିଲା । ମୁଁ ପୁଣି ତା ପାଖକୁ ଫେରିଯିବି ବୋଲି ତା ଆଗରେ ଶପଥ କରି ପ୍ରଭୁଙ୍କୁ ଏକଥା ଜଣାଇବାକୁ ଆସିଛି ।'' ସିଂହ କ୍ରୁଦ୍ଧ ହୋଇ କହିଲା; ଶୀଘ୍ର ଯାଇ ସେ ଦୁଷ୍ଟ କେଉଁଠାରେ ଅଛି ମୋତେ ଦେଖା ।'' ତହୁଁ ଶଶକ ତାକୁ ସଙ୍ଗରେ ନେଇ ଗୋଟିଏ ଗଭୀର କୂପ ଦେଖାଇବାକୁ ଗଲା । ସେଠାରେ ପହଞ୍ଚି ଶଶକ କହିଲା, "ସ୍ୱାମୀ ନିଜେ ଦେଖିବା ହୁଅନ୍ତୁ '' ଏହା କହି ଶଶକ ସେହି କୂପଜଳରେ ସିଂହକୁ ତାର ନିଜ ପ୍ରତିବିମ୍ବକୁ ଦେଖାଇ ଦେଲା । କ୍ରୋଧାନ୍ଧ ସିଂହ ଗର୍ବରେ ସେହି ପ୍ରତିବିମ୍ବ ଉପରକୁ ଡେଇଁ ପଡ଼ି ପ୍ରାଣ ହରାଇଲା । ଏହି ହେତୁରୁ ମୁଁ କହୁଥିଲି ଯେ ଯାହାର ବୁଦ୍ଧି ଥାଏ, ସେ ହେଉଛି ବଳବାନ୍ ଇତ୍ୟାଦି ।

ବାୟସୀ କହିଲା, "ମୁଁ ସବୁ ଶୁଣିଲି । ଏବେ କଅଣ କରି-ବାକୁ ହେବ କହ ।'' ବାୟସ କହିଲା, "ରାଜପୁତ୍ର ପ୍ରତ୍ୟହ ଆସି ଏହି ନିକଟବର୍ତ୍ତୀ ପୁଷ୍କରିଣୀରେ ସ୍ନାନ କରନ୍ତି । ସ୍ନାନ କଲାବେଳେ ସେ ନିଜ ଦେହରୁ ସୁନାହାରଟି କାଢ଼ି ତୀର୍ଥଶିଳା ଉପରେ ରଖି ଦେଇ-ଥାନ୍ତି । ତୁମେ ସେହି ହାରଟିକୁ ଥଣ୍ଟରେ ନେଇଆସି ସାପର କୋରଡ଼ରେ ରଖିଦେବ ।''

ପରେ ରାଜପୁତ୍ର ସ୍ନାନ କରିବାକୁ ଜଳରେ ପ୍ରବେଶ କଲେ । ଏହି ଅବସରରେ ବାୟସୀ ସୁନାହାରଟି ନେଇ କୋରଡ଼ରେ ରଖି ଦେଲା । ରାଜପୁରୁଷମାନେ ସୁନାହାର ଖୋଜୁଖୋଜୁ ସେହି ବୃକ୍ଷ କୋଟରରେ କୃଷ୍ଣସର୍ପକୁ ଦେଖି ତାକୁ ମାରି ପକାଇଲେ । ସେଥିପାଇଁ ମୁଁ କହୁଥିଲି, ଯେଉଁ କାର୍ଯ୍ୟ କୌଶଳରେ କରିପିବାର କଥା, ତାହା ପରାକ୍ରମଦ୍ୱାରା କରି ହେବ ନାହିଁ ଇତ୍ୟାଦି ।

କରଟକ କହିଲା, "ତାହା ହେଲେ ତୁମେ ଯାଅ । ତୁମର ପଥ ମଙ୍ଗଳମୟ ହେଉ ।"

ତତ୍ପରେ ଦମନକ ପିଙ୍ଗଳକ ନିକଟକୁ ଯାଇ ପ୍ରଣାମ କରି କହିଲା, "ପ୍ରଭୁ, ଆପଣଙ୍କ ଉପରକୁ ଗୋଟିଏ ମହାଭୟଙ୍କର ବିପଦ ଆସୁଥିବାର ଜାଣିପାରି ମୁଁ ଆସିଛି । କାରଣ—

ଆପଦ୍ୟୁନ୍ମାର୍ଗଗମନେ କାର୍ଯ୍ୟକାଳାତ୍ୟୟେଷୁ ଚ
କଲ୍ୟାଣବଚନଂ ବ୍ରୂୟାଦପୃଷ୍ଟୋଽପି ହିତୋନରଃ । ୧୨୪ ।

ବିପଦ ଆସିଲେ, କାର୍ଯ୍ୟକାଳ ଅତୀତ ହୋଇଗଲେ ଓ ପ୍ରଭୁ ବିପଥଗାମୀ ହେଲେ ହିତାକାଙ୍କ୍ଷୀ ଲୋକକୁ ନ ପଚାରିଲେ ମଧ୍ୟ ସେ ହିତକର ଉପଦେଶ ଦେବା ଉଚିତ । ୧୨୪ । ପୁଣି—

ଭୋଗସ୍ୟ ଭାଜନଂ ରାଜା ନ ରାଜା କାର୍ଯ୍ୟଭାଜନମ୍ ।
ରାଜକାର୍ଯ୍ୟପରିଧ୍ୱଂସୀ ମନ୍ତ୍ରୀ ଦୋଷେଣ ଲିପ୍ୟତେ । ୧୨୫ ।

ରାଜା କେବଳ ଭୋଗ କରିବା କଥା, କାର୍ଯ୍ୟ କରିବା ଉଚିତ ନୁହେଁ । (ତାହା ମନ୍ତ୍ରୀଙ୍କର କାର୍ଯ୍ୟ ।) ମନ୍ତ୍ରୀ ରାଜାଙ୍କର କାର୍ଯ୍ୟର ଧ୍ୱଂସସାଧନ କଲେ ସେ ଦୋଷୀ ହୁଅନ୍ତି । ୧୨୫ । ପୁଣି ଦେଖନ୍ତୁ, ଅମାତ୍ୟ ବିଷୟରେ ନିୟମ ହେଉଛି—

ବରଂ ପ୍ରାଣପରିତ୍ୟାଗଃ ଶିରସୋ ବାଽପି କର୍ତ୍ତନମ୍
ନ ତୁ ସ୍ୱାମିପଦାବାପ୍ତି ପାତକେଚ୍ଛୋରୁପେକ୍ଷଣମ୍ । ୧୨୬ ।

ପ୍ରାଣତ୍ୟାଗ କରିବା ଭଲ, ମୁଣ୍ଡ କଟିଯିବା ଭଲ । କିନ୍ତୁ ସ୍ୱାମୀଙ୍କର ରାଜପଦକୁ ଲୋଭ କରୁଥିବା ପାତକୀକୁ ଉପେକ୍ଷା କରିବା କଦାପି ଭଲ ନୁହେଁ ।" ୧୨୬ ।

ପିଙ୍ଗଳକ ଆଦର ଦେଖାଇ କହିଲା, "ତୁମେ କଅଣ କହିବାକୁ ଚାହୁଁଛ ?" ଦମନକ କହିଲା, "ପ୍ରଭୁ, ସଞ୍ଜୀବକ ଆପଣଙ୍କର ପ୍ରତିକୂଳ ବ୍ୟବହାର କରୁଥିବାର ଦେଖାଯାଉ ଅଛି । ସେ ଆମମାନଙ୍କ ଆଗରେ ଆପଣଙ୍କର ଶକ୍ତିତ୍ରୟର (ପ୍ରଭୁଶକ୍ତି, ମନ୍ତ୍ରଶକ୍ତି ଓ ଉତ୍ସାହଶକ୍ତି) ନିନ୍ଦା କରି ନିଜେ ରାଜ୍ୟ ଅଧିକାର କରିବାକୁ ଇଚ୍ଛା କରୁଅଛି ।"

ଏହା ଶୁଣି ପିଙ୍ଗଳକ ଭୟରେ ଓ ଆଶ୍ଚର୍ଯ୍ୟରେ ତୁନି ହୋଇ ରହିଲା । ଦମନକ ପୁଣି କହିଲା, "ଦେବ, ଆପଣ ସବୁ ଅମାତ୍ୟଙ୍କୁ ତ୍ୟାଗ କରି ସଞ୍ଜୀବକକୁ ଯେ ସବୁ ଅଧିକାର ଦେଲେ, ତାହାହିଁ ହେଉଛି ଦୋଷ । ଯେହେତୁ—

ଅତ୍ୟୁଚ୍ଛ୍ରିତେ ମନ୍ତ୍ରିଣି ପାର୍ଥିବେ ଚ
ବିଷ୍ଟଭ୍ୟ ପାଦାବୁପତିଷ୍ଠତେ ଶ୍ରୀଃ
ସା ସ୍ତ୍ରୀସ୍ୱଭାବାଦସହା ଭରସ୍ୟ
ତୟୋର୍ଦ୍ୱୟୋରେକତରଂ ଜହାତି । ୧୨୭ ।

ଅତି ପ୍ରଭାବଶାଳୀ ମନ୍ତ୍ରୀଙ୍କର ଅଥବା ରାଜାଙ୍କର ପାଦ ଦୁଇଟିକୁ ଅବଲମ୍ବନ କରି ଲକ୍ଷ୍ମୀ ସ୍ଥିର ରହିଥାନ୍ତି; କିନ୍ତୁ ନାରୀସୁଲଭ ସ୍ୱଭାବବଶତଃ ଅତ୍ୟଧିକ ଭାର ସହି ନ ପାରି ଦୁହିଁଙ୍କ ଭିତରୁ ଜଣକୁ ତ୍ୟାଗ କରିଥାନ୍ତି । ୧୨୭ । ପୁଣି—

ଏକଂ ଭୂମିପତିଃ କରୋତି ସଚିବଂ ରାଜ୍ୟେ ପ୍ରମାଣଂ ଯଦା
ତଂ ମୋହାଚ୍ଛ୍ରୟତେ ମଦଃ ସ ଚ ମଦାଳସ୍ୟେନ ନିର୍ବିଦ୍ୟତେ ।
ନିର୍ବିଣ୍ଣସ୍ୟ ପଦଂ କରୋତି ହୃଦୟେ ତସ୍ୟ ସ୍ୱତନ୍ତ୍ରସ୍ପୃହା
ସ୍ୱାତନ୍ତ୍ର୍ୟସ୍ପୃହୟା ତତଃ ସ ନୃପତେଃ ପ୍ରାଣାନ୍ତିକଂ ଦ୍ରୁହ୍ୟତି । ୧୨୮ ।

ଯଦି ରାଜା ଜଣେ ମନ୍ତ୍ରୀକୁ ସମସ୍ତ ଅଧିକାର ଦିଅନ୍ତି, ତେବେ ଅଜ୍ଞତାବଶତଃ ଅଭିମାନ ଓ ଆଳସ୍ୟ ତାର ମନରେ ଭେଦଭାବ ଜାତ କରାନ୍ତି । ଭେଦଭାବ ଆସିବାରୁ ତାର ସ୍ୱତନ୍ତ୍ର ହେବାର ଇଚ୍ଛା ଜନ୍ମେ । ଏହି ଇଚ୍ଛା ଫଳରେ ସେ ରାଜାଙ୍କର ପ୍ରାଣାନ୍ତକ ଦ୍ରୋହ ଆଚରଣ କରେ । ୧୨୮ । ପୁଣି—

ବିଷଦିଗ୍ଧସ୍ୟ ଭକ୍ତସ୍ୟ ଦନ୍ତସ୍ୟ ଚଳିତସ୍ୟ ଚ ।
ଅମାତ୍ୟସ୍ୟ ଚ ଦୁଷ୍ଟସ୍ୟ ମୂଳାଦୁଦ୍ଧରଣଂ ସୁଖମ୍ । ୧୨୯ ।

ବିଷମିଶ୍ରିତ ଅନ୍ନ, ହଲୁଥିବା ଦନ୍ତ, ଦୁଷ୍ଟ ଅମାତ୍ୟ— ଏମାନଙ୍କୁ ସମୂଳେ ଦୂର କରିଦେବା ହିତକର ଅଟେ । ୧୨୯ । ପୁଣି—

ଯଃ କୁର୍ଯ୍ୟାତ୍ ସଚିବାୟତ୍ତାଂ ଶ୍ରିୟଂ ତଦ୍‌ବ୍ୟସନେ ସତି ।
ସୋଽନ୍ଧବଜ୍ଜଗତୀପାଳଃ ସୀଦେତ୍ ସଞ୍ଚାରକୈର୍ବିନା । ୧୩୦ ।

ଯେଉଁ ରାଜା ରାଜଲକ୍ଷ୍ମୀଙ୍କୁ ସଚିବହାତରେ ସମର୍ପି ଦିଅନ୍ତି, ସେ ବିପଦ ସମୟରେ ପଥପ୍ରଦର୍ଶକ ବିନା ଅନ୍ଧ ସଦୃଶ ଦୁଃଖ ଭୋଗ କରନ୍ତି । ୧୩୦ ।

ଆପଣଙ୍କ ସଚିବ ସ୍ୱେଚ୍ଛାନୁସାରେ ସବୁ କାର୍ଯ୍ୟ କରୁଛନ୍ତି । ଏବେ ଆପଣଙ୍କର ଯାହା ଇଚ୍ଛା ତାହା କରନ୍ତୁ । ଆଉ ମଧ୍ୟ ଆପଣ ଜାଣନ୍ତି ଯେ—

ନ ସୋଽସ୍ତି ପୁରୁଷୋ ଲୋକେ
ଯୋ ନ କାମୟତେ ଶ୍ରିୟମ୍ ।
ପରସ୍ୟ ଯୁବତୀଂ ରମ୍ୟାଂ
ସାଦରଂ ନେକ୍ଷତେଽତ୍ର କଃ । ୧୩୧ ।

ଲକ୍ଷ୍ମୀଙ୍କୁ ଲାଭ କରିବାକୁ ଇଚ୍ଛା କରୁ ନଥିବା ଲୋକ ଜଗତରେ କେହି ନାହିଁ । ଅପରର ସୁନ୍ଦରୀ ଯୁବତୀ ଭାର୍ଯ୍ୟାକୁ କିଏ ଆଦର ସହକାରେ ଅନାଏଁ ନାହିଁ ? ୧୩୧ ।

ସିଂହ ଚିନ୍ତା କରି କହିଲା, "ଭଦ୍ର, ତୁମ କଥା ଖୁବ୍ ଠିକ୍ ହେଲେ ମଧ୍ୟ ସଞ୍ଜୀବକ ସହିତ ମୋର ପ୍ରଗାଢ଼ ପ୍ରୀତି । ଦେଖ—

କୁର୍ବନ୍ନପି ବ୍ୟଲୀକାନି ଯଃ ପ୍ରିୟଃ ପ୍ରିୟ ଏବ ସଃ ।
ଅଶେଷଦୋଷଦୁଷ୍ଟୋଽପି କାୟଃ କସ୍ୟ ନ ବଲ୍ଲଭଃ । ୧୩୨ ।

ଯେତେ ଅପରାଧ କଲେ ମଧ୍ୟ ଯେ ପ୍ରିୟ, ସେ ସର୍ବଦା ପ୍ରିୟ ହୋଇ ରହେ । ଶରୀର ଅଶେଷ ଦୋଷଯୁକ୍ତ ହେଲେ ମଧ୍ୟ ସେ କାହାର ପ୍ରିୟ ନୁହେଁ ? ୧୩୨ । ପୁଣି—

ଅପ୍ରିୟାଣ୍ୟପି କୁର୍ବାଣୋ ଯଃ ପ୍ରିୟଃ ପ୍ରିୟ ଏବ ସଃ
ଦଗ୍‌ଧମନ୍ଦିରସାରେଽପି କସ୍ୟ ବହ୍ନାବନାଦରଃ । ୧୩୩ ।

ଅପ୍ରିୟ କାର୍ଯ୍ୟ କଲେ ମଧ୍ୟ ଯେ ପ୍ରିୟ, ସେ ପ୍ରିୟ ହୋଇ ରହିବ । ଅଗ୍ନି ଯେତେ ଗୃହ ଦଗ୍‌ଧ କଲେ ସୁଦ୍ଧା କେହି ଅଗ୍ନିକୁ ଅନାଦର କରେ କି ?" ୧୩୩ ।

ଦମନକ ପୁନରାୟ କହିଲା, "ପ୍ରଭୁ, ଏହାହିଁ ହେଉଛି ପ୍ରଧାନ ଦୋଷ । କାରଣ—

ଯସ୍ମିନ୍ନେବାଧିକଂ ଚକ୍ଷୁରାରୋହୟତି ପାର୍ଥିବଃ
ସୁତେଽମାତ୍ୟେଽପ୍ୟୁଦାସୀନେ ସ ଲକ୍ଷ୍ମ୍ୟାଶ୍ରୀୟତେ ଜନଃ । ୧୩୪ ।

ପୁତ୍ର ବା ଅମାତ୍ୟ ଉଦାସୀନ ହୋଇଥିଲେହେଁ ରାଜା ଯାହା ଉପରେ ସୁଦୃଷ୍ଟି ପକାନ୍ତି, ଲକ୍ଷ୍ମୀ ତାକୁ ହିଁ ଆଶ୍ରୟ କରନ୍ତି । ୧୩୪ । ଦେବ, ଆହୁରି ଶୁଣନ୍ତୁ—

ଅପ୍ରିୟସ୍ୟାପି ପଥ୍ୟସ୍ୟ ପରିଣାମଃ ସୁଖାବହଃ ।
ବକ୍ତା ଶ୍ରୋତା ଚ ଯତ୍ରାସ୍ତି ରମନ୍ତେ ତତ୍ର ସମ୍ପଦଃ । ୧୩୫ ।

ଅପ୍ରିୟ ଅଥଚ ହିତକର ପରାମର୍ଶର ପରିଣାମ ସୁଖକର ହୁଏ । ଯେଉଁଠାରେ ଏପରି ପରାମର୍ଶଦାତା ଓ ପରାମର୍ଶର ଶ୍ରୋତା ଥାଆନ୍ତି, ସେଠାରେ ସକଳ ସମ୍ପଦ ବିରାଜମାନ କରେ । ୧୩୫ ।

ଆପଣ ନିଜର ପୁରାତନ ଭୃତ୍ୟମାନଙ୍କୁ ତ୍ୟାଗ କରି ଜଣେ ଆଗନ୍ତୁକକୁ ଉଚ୍ଚତମ ସ୍ଥାନ ଦେଇ ଅଛନ୍ତି । ଏପରି କରିବା ଅନୁଚିତ ହୋଇଅଛି । କାରଣ—

ମୂଳଭୃତ୍ୟାନ୍ ପରିତ୍ୟଜ୍ୟ ନାଗନ୍ତୂନ୍ ପ୍ରତିମାନୟେତ୍ ।
ନାତଃ ପରତରୋ ଦୋଷୋ ରାଜ୍ୟଭେଦକରୋ ଯତଃ । ୧୩୬ ।

ରାଜ୍ୟର ପୁରାତନ ଭୃତ୍ୟମାନଙ୍କୁ ତ୍ୟାଗ କରି ନବାଗତ-ମାନଙ୍କୁ ଆଦର କରିବା ଉଚିତ ନୁହେଁ । କାରଣ ରାଜ୍ୟରେ ଏହାଠାରୁ ବଳି ଭେଦସୃଷ୍ଟିକାରୀ ଦୋଷ ଆଉ କିଛି ନାହିଁ ।" ୧୩୬ ।

ସିଂହ କହିଲା, "କି ଆଶ୍ଚର୍ଯ୍ୟ ! ଯାହାକୁ ମୁଁ ଅଭୟବାଣୀ ଦେଇ ଆଣି ଉଚ୍ଚ ଆସନ ଦେଇଛି, ସେ ପୁଣି ମୋ ପ୍ରତି ଦ୍ରୋହ ଆଚରଣ କରୁଛି ?".

ଦମନକ କହିଲା—

ଦୁର୍ଜନୋ ନାର୍ଜବଂ ଯାତି ସେବ୍ୟମାନୋଽପି ନିତ୍ୟଶଃ
ସ୍ୱେଦନାଭ୍ୟଞ୍ଜନୋପାୟୈଃ ଶ୍ୱପୁଚ୍ଛମିବ ନାମିତମ୍ । ୧୩୭ ।

ପ୍ରତ୍ୟହ ସେବା କଲେହେଁ ଦୁର୍ଜନ କେବେ ସରଳ ହୁଏ ନାହିଁ । ଯେପରି ସେକିଲେ, ଯେପରି ତେଲ ଘଷିଲେ ହେଁ କୁକୁରର ଲାଙ୍ଗୁଳ କେବେ ସିଧା ହୁଏ ନାହିଁ । ୧୩୭ ।

ସ୍ୱେଦତୋ ମର୍ଦ୍ଦିତଶ୍ଚୈବ ରଜ୍ଜୁଭିଃ ପରିବେଷ୍ଟିତଃ ।
ମୁକ୍ତୋ ଦ୍ୱାଦଶଭିର୍ବର୍ଷୈଃ ଶ୍ୱପୁଚ୍ଛଃ ପ୍ରକୃତିଂ ଗତଃ । ୧୩୮ ।

ବାର ବର୍ଷ ପର୍ଯ୍ୟନ୍ତ କୁକୁର ଲାଙ୍ଗୁଳକୁ ସେକ ଦିଅ, ମର୍ଦ୍ଦନ କର, ଦଉଡ଼ି ଗୁଡ଼ାଇ ବାନ୍ଧି ରଖ; ଫିଟାଇଲା ମାତେ ପୁଣି ତାର ପୂର୍ବ ଅବସ୍ଥାକୁ ଫେରିଯିବ । ୧୩୮ । ପୁଣି—

ବର୍ଦ୍ଧନଂ ବାଥ ସମ୍ମାନଂ ଖଳାନାଂ ପ୍ରୀତୟେ କୁତଃ ।
ଫଳନ୍ତ୍ୟମୃତସେକେଽପି ନ ପଥ୍ୟାନି ବିଷଦ୍ରୁମାଃ । ୧୩୯ ।

ଉଚ୍ଚ ପଦ ଅଥବା ସମ୍ମାନ ଦେଲେ ମଧ୍ୟ ଖଳଲୋକର ପ୍ରୀତି ସମ୍ପାଦନ କରାଯାଇ ନପାରେ । ବିଷବୃକ୍ଷ ମୂଳରେ ଅମୃତ ସେଚନ କଲେ ତାର ଫଳ କଅଣ ମଧୁର ଓ ହିତକର ହେବ ? ୧୩୯ । ତେଣୁ ମୁଁ କହୁଛି—

ଅପୃଷ୍ଟୋଽପି ହିତଂ ବ୍ରୂୟାଦ୍ ଯସ୍ୟ ନେଚ୍ଛେତ୍ପରାଭବମ୍ ।
ଏଷ ଏବ ସତାଂ ଧର୍ମୋ ବିପରୀତମତୋଽନ୍ୟଥା । ୧୪୦ ।

ଯେଉଁ ଲୋକ ପ୍ରଭୁଙ୍କର ପରାଭବ କାମନା କରେ ନାହିଁ, ତାକୁ ନ ପଚାରିଲେ ସୁଦ୍ଧା ସେ ହିତକର ପରାମର୍ଶ ଦେବ । ଏହା ହେଉଛି ସଜ୍ଜନର ଧର୍ମ । ଯିଏ ଏହାର ବିପରୀତ ଆଚରଣ କରେ ସେ ଦୁର୍ଜନ ଅଟେ । ୧୪୦ । ପୁଣି—

ସ ସ୍ନିଗ୍ଧୋଽକୁଶଲାନ୍ନିବାରୟତି ଯତ୍ତତ୍କର୍ମ ଯନ୍ନିର୍ମଳଂ
ସା ସ୍ତ୍ରୀ ଯାନୁବିଧାୟିନୀ ସ ମତିମାନ୍ ଯଃ ସଦ୍ଭିରଭ୍ୟର୍ଚ୍ୟତେ ।
ସା ଶ୍ରୀର୍ଯା ନ ମଦଂ କରୋତି ସ ସୁଖୀ ଯସ୍ତୃଷ୍ଣୟା ମୁଚ୍ୟତେ
ତନ୍ମିତ୍ରଂ ଯଦକୃତ୍ରିମଂ ସ ପୁରୁଷୋ ଯଃ ଖିଦ୍ୟତେ ନେନ୍ଦ୍ରିୟୈଃ । ୧୪୧ ।

ଯିଏ ଅମଙ୍ଗଳରୁ ନିବାରଣ କରେ, ସେ ହେଉଛି ସ୍ନେହୀ; ଯାହା ପବିତ୍ର ତାହାହିଁ କର୍ମ; ଯେଉଁ ସ୍ତ୍ରୀ ଆଦେଶ ପାଳନ କରେ, ସେ ସୁକୃତ ସ୍ତ୍ରୀ; ଯିଏ ସଜ୍ଜନମାନଙ୍କଦ୍ୱାରା ପୂଜିତ ହୁଏ, ସେ ବୁଦ୍ଧିମାନ୍; ଯାହା ଗର୍ବ ଜାତ ନ କରାଏ ତାହାହିଁ ହେଉଛି ଶ୍ରୀ; ଯାହାର ତୃଷ୍ଣା ନ ଥାଏ, ସେ ହେଉଛି ସୁଖୀ; ଯିଏ ଛଳନାଶୂନ୍ୟ, ସେ ହେଉଛି ମିତ୍ର; ଆଉ ସେହି ହେଉଛି ପୁରୁଷ ଯିଏ ଇନ୍ଦ୍ରିୟମାନଙ୍କଦ୍ୱାରା ପୀଡ଼ିତ ହୁଏ ନାହିଁ । ୧୪୧ ।

ମୋର ଜଣାଇବା ସତ୍ତ୍ୱେ ଯଦି ଆପଣ ଏହି ସଞ୍ଜୀବକ ପ୍ରୀତିରୁ ବିରତ ନ ହୁଅନ୍ତି, ତେବେ ମୋ ଭଳି ସେବକର ଦୋଷ ନାହିଁ । ପୁଣି—

ନୃପଃ କାମାସକ୍ତୋ ଗଣୟତି ନ କାର୍ଯ୍ୟଂ ନ ଚ ହିତମ୍
ଯଥେଷ୍ଟଂ ସ୍ୱଚ୍ଛନ୍ଦଃ ପ୍ରବିଚରତି ମତ୍ତୋ ଗଜ ଇବ ।
ତତୋ ମାନଧ୍ମାତଃ ସ ପତତି ଯଦା ଶୋକଗହନେ
ତଦା ଭୃତ୍ୟେ ଦୋଷାନ୍ କ୍ଷିପତି ନ ନିଜଂ ବେତ୍ତ୍ୟବିନୟମ୍ । ୧୪୨ ।

କାମାସକ୍ତ ରାଜା କାର୍ଯ୍ୟ ପ୍ରତି ଦୃଷ୍ଟି ଦିଏ ନାହିଁ; କି ନିଜର ମଙ୍ଗଳ ପ୍ରତି ଦୃଷ୍ଟି ଦିଏ ନାହିଁ । ମତ୍ତ ଗଜପରି ସେ ସ୍ୱଚ୍ଛନ୍ଦରେ ଯଥେଚ୍ଛା ବିହାର କରେ । ଶେଷରେ ସେ ଯେତେବେଳେ ଦର୍ପରେ ଉନ୍ମତ୍ତ ହୋଇ ଶୋକରୂପକ ଗର୍ତ୍ତରେ ପତିତ ହୁଏ, ସେତେବେଳେ ସେ ନିଜର ଦୋଷ ନ ଦେଖି ସବୁ ଦୋଷ ଭୃତ୍ୟମାନଙ୍କ ମୁଣ୍ଡରେ ଲଦି ଦିଏ । ୧୪୨ । ତହୁଁ ପିଙ୍ଗଳକ ମନେ ମନେ କହିଲା,

ନ ପରସ୍ୟାପରାଧେନ ପରେଷାଂ ଦଣ୍ଡମାଚରେତ୍
ଆତ୍ମନାଽବଗତଂ କୃତ୍ୱା ବଧ୍ନୀୟାତ୍ ପୂଜୟେଚ୍ଚ ବା । ୧୪୩ ।

ଜଣକର ଦୋଷ ପାଇଁ ଅନ୍ୟ ଜଣକୁ ଦଣ୍ଡ ଦେବା ରଜାଙ୍କ ପକ୍ଷରେ ଅନୁଚିତ । ଆଗେ ନିଜେ ବୁଝି ବିଚାରି କାହାକୁ ଦଣ୍ଡ ଦେବାକୁ ହେବ, କାହାକୁ ଅବା ସମ୍ମାନ ଦେବାକୁ ହେବ । ୧୪୩ । ଆହୁରି ମଧ୍ୟ କଥିତ ଅଛି—

ଗୁଣଦୋଷାବନିଶ୍ଚିତ୍ୟ ବିଧିର୍ନ ଗ୍ରହନିଗ୍ରହେ
ସ୍ୱନାଶାୟ ଯଥା ନ୍ୟସ୍ତୋ ଦର୍ପାତ୍ ସର୍ପମୁଖେ କରଃ । ୧୪୪ ।

ଗୁଣ ବା ଦୋଷ ବିବେଚନା ନ କରି କାହାରିକୁ ଅନୁଗ୍ରହ କରିବା ବା ଦଣ୍ଡଦେବା ଉଚିତ ନୁହେଁ । ସେପରି କରିବା ଯାହା, ଅଭିମାନବଶତଃ ସାପ ମୁହଁରେ ହାତ ଦେଇ ନିଜର ବିନାଶ କରିବା ତାହା । ୧୪୪ । ପ୍ରକାଶ୍ୟରେ କହିଲା, "ତେବେ କଅଣ ସଞ୍ଜୀବକକୁ ସେବାରୁ ବାହାର କରିଯିବ ?" ଦମନକ ବିଚଳିତ ହୋଇ କହିଲା, "ଦେବ, ସେପରି କରନ୍ତୁ ନାହିଁ । ଏହାଦ୍ୱାରା ମନ୍ତ୍ରଭେଦ ହୋଇଯିବ ।" କଥିତ ଅଛି—

ମନ୍ତ୍ରବୀଜମିଦଂ ଗୁପ୍ତଂ ରକ୍ଷଣୀୟଂ ଯଥା ତଥା ।
ମନାଗପି ନ ଭିଦ୍ୟେତ ତଦ୍‌ଭିନ୍ନଂ ନ ପ୍ରରୋହତି । ୧୪୫ ।

ରାଜା ଓ ଅମାତ୍ୟ ଭିତରେ ହୋଇଥିବା ମନ୍ତ୍ରଣା ହେଉଛି ବୀଜ ସ୍ୱରୂପ । ଏହାକୁ ଯେପରି ହେଉ ଗୁପ୍ତ ରଖିବା ଉଚିତ । ବୀଜ ପଦାରେ ପଡ଼ିଲେ ଯେପରି ଅଙ୍କୁର ବାହାରେ ନାହିଁ, ମନ୍ତ୍ର ସେହିପରି ପ୍ରକାଶ ପାଇଗଲେ ତାହା ଫଳପ୍ରଦ ହୁଏ ନାହିଁ । ୧୪୫ । ପୁଣି—

ଆଦେୟସ୍ୟ ପ୍ରଦେୟସ୍ୟ କର୍ତ୍ତବ୍ୟସ୍ୟ ଚ କର୍ମଣଃ ।
କ୍ଷିପ୍ରମକ୍ରିୟମାଣସ୍ୟ କାଳଃ ପିବତି ତଦ୍ରସମ୍ । ୧୪୬ ।

ଆଦାନ ପ୍ରଦାନ ଓ କର୍ତ୍ତବ୍ୟ କର୍ମର ସମ୍ପାଦନ ଶୀଘ୍ର ନ କଲେ କାଳ ତାହାର ରସ ପିଇଯାଏ । ଅର୍ଥାତ୍ ବିଳମ୍ବ କଲେ ତାହାର ପରିଣାମ ଭଲ ହୁଏ ନାହିଁ । ୧୪୬ ।

ତେଣୁ ଯେଉଁ କାର୍ଯ୍ୟ ଆରମ୍ଭ ହୋଇଅଛି, ତାହାକୁ ଯତ୍ନ ସହକାରେ ସମ୍ପାଦନ କରିବାକୁ ହେବ । ପୁଣି—

ମନ୍ତ୍ରୋଯୋଧଃ ଇବାଧୀରଃ ସର୍ବାଙ୍ଗୈଃ ସଂବୃତୈରପି ।
ଚିରଂ ନ ସହତେ ସ୍ଥାତୁଂ ପରେଭ୍ୟୋ ଭେଦଶଙ୍କୟା । ୧୪୭ ।

ଯେପରି ସର୍ବାଙ୍ଗ ଆବୃତ ହୋଇ ଥିଲେହେଁ ଶତ୍ରୁ ସୈନିକ ଶସ୍ତ୍ରଠାରୁ ଆଘାତ ପାଇବା ଭୟରେ ଯୁଦ୍ଧ ଭୂମିରେ ରହିପାରେ ନାହିଁ, ସେହିପରି ଅମାତ୍ୟ ପ୍ରଭୃତି ରାଜାଙ୍ଗରେ ଯେତେ ଗୁପ୍ତ ରଖା-ଯାଇଥିଲେହେଁ ମନ୍ତ୍ରଣା ପ୍ରକାଶ ପାଇବା ଭୟରେ ବେଶି ସମୟ ଗୁପ୍ତ ରହିପାରେ ନାହିଁ । ୧୪୭ । (ଅତଏବ ଶୀଘ୍ର ମନ୍ତ୍ରଣା ଅନୁସାରେ କାର୍ଯ୍ୟ କରିବା ଉଚିତ ।)

ଏହାର ଦୋଷ ଜାଣିସାରି ଯଦି ଆପଣ ସେହି ଦୋଷ ପ୍ରତି ଦୃଷ୍ଟି ନ ଦେଇ ଏହା ସଙ୍ଗେ ସନ୍ଧି କରିବାକୁ ଚାହାନ୍ତି, ତେବେ ତାହା ଉଚିତ ହେବ ନାହିଁ । କାରଣ—

ସକୃଦ୍ ଦୁଷ୍ଟଂ ତୁ ଯୋ ମିତ୍ରଂ ପୁନଃ ସନ୍ଧାତୁମିଚ୍ଛତି ।
ସ ମୃତ୍ୟୁମେବ ଗୃହ୍ଣାତି ଗର୍ଭମଶ୍ୱତରୀ ଯଥା । ୧୪୮ ।

ଯେଉଁ ମିତ୍ର ଥରେ ହେଲେ ମଧ୍ୟ ଦୁଷ୍ଟତା ପ୍ରକାଶ କରିଥାଏ, ତାହା ସଙ୍ଗେ ଯିଏ ପୁନରପି ମିଳିତ ହେବାକୁ ଇଚ୍ଛା କରେ, ସେ ଅଶ୍ୱତରୀ (ଖଚରୀ) ଗର୍ଭ ଧାରଣ କରି ମୃତ୍ୟୁ ମୁଖରେ ପଡ଼ିଲା ପରି ନିଜର ମୃତ୍ୟୁକୁ ବରଣ କରିନିଏ ।" ୧୪୮ ।

ସିଂହ କହିଲା, "ପ୍ରଥମେ ବୁଝ, ସେ ଆମର କ ଅନିଷ୍ଟ କରିପାରେ ।" ଦମନକ କହିଲା,—"ଦେବ,

ଅଙ୍ଗାଙ୍ଗିଭାବମଜ୍ଞାତ୍ୱା କଥଂ ସାମର୍ଥ୍ୟନିର୍ଣ୍ଣୟଃ
ପଶ୍ୟ ଟିଟ୍ଟିଭ ମାତ୍ରେଣ ସମୁଦ୍ରୋ ବ୍ୟାକୁଳୀକୃତଃ । ୧୪୯ ।

ଅଙ୍ଗ ଓ ଅଙ୍ଗୀ ମଧ୍ୟରେ (ସହାୟକ ଓ ସାହାଯ୍ୟଗ୍ରହୀତା ମଧ୍ୟରେ) ପରସ୍ପର ସମ୍ବନ୍ଧ ନ ଜାଣି କପରି ଶତ୍ରୁର ଶକ୍ତି କଳନା କରି ହେବ ? ଦେଖନ୍ତୁ, ସାମାନ୍ୟ ଟିଟ୍ଟିଭ ପକ୍ଷୀ ମଧ୍ୟ ସମୁଦ୍ରକୁ ବ୍ୟାକୁଳ କରି ଦେଇଥିଲା ।" ୧୪୯ ।

ସିଂହ ପଚାରିଲା, "ସେ କଥା କଅଣ ?" ଦମନକ କହିଲା—

## କଥା-୯

ଦକ୍ଷିଣ ସମୁଦ୍ରର ତଟରେ ଗୋଟିଏ ଟିଟ୍ଟିଭ ଓ ତାର ସ୍ତ୍ରୀ ବାସ କରୁଥିଲେ । ପ୍ରସବ ସମୟ ନିକଟ ହେବାରୁ ମାଈ ଟିଟ୍ଟିଭ କହିଲା, "ନାଥ, ଗୋଟିଏ ନିଭୃତ ପ୍ରସବଯୋଗ୍ୟ ସ୍ଥାନ ସନ୍ଧାନ କର ।" ଟିଟ୍ଟିଭ କହିଲା, "ଏ ସ୍ଥାନ କଅଣ ପ୍ରସବଯୋଗ୍ୟ ନୁହେଁ ?" ମାଈ ଟିଟ୍ଟିଭ କହିଲା, "ଏ ସ୍ଥାନ ଉପରେ ସମୁଦ୍ର ଲହରୀ ମାଡ଼ିଯାଏ ।" ଟିଟ୍ଟିଭ କହିଲା, "ମୁଁ କଅଣ ଏଡ଼େ ଦୁର୍ବଳ ଯେ ସମୁଦ୍ର ମୋ ଉପରେ ଅତ୍ୟାଚାର କରିବ ?" ମାଈ ଟିଟ୍ଟିଭ ହସିହସି କହିଲା, "ନାଥ, ସମୁଦ୍ର ଆଉ ତୁମ ଭିତରେ ବହୁତ ପ୍ରଭେଦ । ଅଥବା—

ଯଚ୍ଛକ୍ତ୍ୟଂ ପରିଚ୍ଛେତ୍ତୁଂ ଯୋଗ୍ୟାଯୋଗ୍ୟଂ ଚ ବେତ୍ତି ଯଃ ।
ଅସ୍ତୀହ ଯସ୍ୟ ବିଜ୍ଞାନଂ କୃଚ୍ଛ୍ରେଣାପି ନ ସୀଦତି । ୧୫୦ ।

ଯେଉଁ ଲୋକ ପରାଭବର କାରଣକୁ ଦୂର କରିବା ପାଇଁ ସେ ଯୋଗ୍ୟ କି ନା ଏହା ଜାଣିଥାଏ ଓ ନିଜର ଶକ୍ତି ବିଷୟରେ ସଚେତନ ଥାଏ, ସେ ବିପଦରେ ମଧ୍ୟ ଦୁଃଖିତ ହୁଏ ନାହିଁ । ୧୫୦ । ପୁନଶ୍ଚ—

ଅନୁଚିତକାର୍ଯ୍ୟାରମ୍ଭଃ ସ୍ୱଜନବିରୋଧୋ ବଳୀୟସା ସ୍ପର୍ଦ୍ଧା ।
ପ୍ରମଦାଜନବିଶ୍ୱାସୋ ମୃତ୍ୟୋର୍ଦ୍ୱାରାଣି ଚତ୍ୱାରି । ୧୫୧ ।

ଅନୁଚିତ କାର୍ଯ୍ୟର ଆରମ୍ଭ, ଆତ୍ମୀୟ ଲୋକଙ୍କ ସହ ବିରୋଧ, ଅଧିକ ବଳବାନ୍ ଲୋକ ସହିତ ଶତ୍ରୁତା ଓ ସ୍ତ୍ରୀଲୋକଠାରେ ବିଶ୍ୱାସ—ଏ ଚାରୋଟି ମୃତ୍ୟୁର ଦ୍ୱାର ସ୍ୱରୂପ ।'' ୧୫୧ ।

ତହୁଁ ସ୍ୱାମୀର ବାକ୍ୟରେ ଆଶ୍ୱସ୍ତ ହୋଇ ମାଈ ଟିଟ୍ଟିଭ ସେହିଠାରେ ଡିମ୍ବ ପ୍ରସବ କଲା । ସମୁଦ୍ର ଏ ସବୁ ଶୁଣି ନିଜର ପରାକ୍ରମ ଦେଖାଇବା ପାଇଁ ସେହି ଡିମ୍ବଗୁଡ଼ିକୁ ଭସାଇ ନେଇଗଲା । ତାପରେ ମାଈ ଟିଟ୍ଟିଭ ଶୋକରେ ଅଧୀର ହୋଇ ସ୍ୱାମୀକୁ କହିଲା, ‘‘ସ୍ୱାମୀ, ଏବେ ଦୁଃଖ ଉପସ୍ଥିତ । ମୋର ଡିମ୍ବଗୁଡ଼ିକ ନଷ୍ଟ ହୋଇଗଲା ।'' ଟିଟ୍ଟିଭ କହିଲା, ‘‘ପ୍ରିୟେ, ତୁମେ ଭୟ କର ନାହିଁ ।''

ଏହା କହି ଟିଟ୍ଟିଭ ସବୁ ପକ୍ଷୀଙ୍କୁ ଏକତ୍ର କରି ପକ୍ଷୀରାଜ ଗରୁଡ଼ଙ୍କ ନିକଟକୁ ଗଲା । ସେଠାରେ ସେ ଭଗବାନ୍ ଗରୁଡ଼ଙ୍କ ଆଗରେ ସମସ୍ତ ବୃତ୍ତାନ୍ତ ଜଣାଇ କହିଲା, ‘‘ପ୍ରଭୁ, ମୋ ଘରେ ମୁଁ ଥିବା ଅବସ୍ଥାରେ କୌଣସି ଅପରାଧ କରି ନ ଥିଲେ ମଧ୍ୟ ସମୁଦ୍ର ମୋତେ ଦଣ୍ଡ ଦେଇଅଛି ।''

ତାହାର କଥା ଶୁଣି ପକ୍ଷୀରାଜ ଗରୁଡ଼ ସୃଷ୍ଟି, ସ୍ଥିତି ଓ ଲୟର କାରଣ ସ୍ୱରୂପ ଭଗବାନ୍ ନାରାୟଣଙ୍କୁ ଏହା ଜଣାଇଲେ । ଡିମ୍ବ

ଫେରାଇ ଦେବାପାଇଁ ନାରାୟଣ ସମୁଦ୍ରକୁ ଆଦେଶ ଦେଲେ । ନାରାୟଣଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ସମୁଦ୍ର ଡିମ୍ବଗୁଡ଼ିକୁ ଆଣି ଟିଟ୍ଟିଭକୁ ଫେରାଇ ଦେଲା । ତେଣୁ ମୁଁ କହୁଥିଲି—ଅଙ୍ଗ ଓ ଅଙ୍ଗୀ ମଧ୍ୟରେ ପରସ୍ପର ସମ୍ବନ୍ଧ ଇତ୍ୟାଦି ।

ପିଙ୍ଗଳକ କହିଲା, "ସେ ମୋ ପ୍ରତି ଶତ୍ରୁତା କରୁଛି ବୋଲି କିପରି ଜଣା ପଡ଼ିବ ?" ଦମନକ କହିଲା, "ସେ ଯେତେବେଳେ ଦର୍ପରେ ଶିଙ୍ଘ ଟେକି ମାରିବାକୁ ଉଦ୍ୟତ ହେଲା ପରି ଚକିତ ଭାବରେ ଆପଣଙ୍କ ଆଡ଼କୁ ଆସିବ ସେତେବେଳେ ଆପଣ ଜାଣି ପାରିବେ ।" ଏହା କହି ଦମନକ ସଞ୍ଜୀବକ ପାଖକୁ ଗଲା । ସେଠାକୁ ଯାଇ ଧୀରେ ଧୀରେ ଅଗ୍ରସର ହୋଇ ନିଜକୁ ବିସ୍ମିତ ହେଲା ଭଳି ଦେଖାଇଲା । ସଞ୍ଜୀବକ ଆଦର କରି ପଚାରିଲା, "ବନ୍ଧୁ, ତୁମର ସବୁ କୁଶଳ ତ !" ଦମନକ କହିଲା, "ସେବକମାନଙ୍କର କୁଶଳ କାହିଁ ? କାରଣ—

ସମ୍ପତ୍ତୟଃ ପରାଧୀନାଃ ସଦା ଚିତ୍ତମନିର୍ବୃତମ୍
ସ୍ୱଜୀବିତେଽପ୍ୟବିଶ୍ୱାସସ୍ତେଷାଂ ଯେ ରାଜସେବକାଃ । ୧୫୨ ।

ଯେଉଁମାନେ ରାଜସେବକ, ସେମାନଙ୍କର ସମ୍ପତ୍ତି ପରାଧୀନ, ଚିତ୍ତ ନିରାନନ୍ଦ ଓ ସେମାନଙ୍କ ଜୀବନ ଉପରେ ମଧ୍ୟ ବିଶ୍ୱାସ ନଥାଏ । ୧୫୨ । ପୁଣି—

କୋଽର୍ଥାନ୍ ପ୍ରାପ୍ୟ ନ ଗର୍ବିତୋ ବିଷୟିଣଃ କସ୍ୟାପଦୋଽସ୍ତଂ ଗତାଃ
ସ୍ତ୍ରୀଭିଃ କସ୍ୟ ନ ଖଣ୍ଡିତଂ ଭୁବି ମନଃ କୋ ବାସ୍ତି ରାଜ୍ଞାଂ ପ୍ରିୟଃ ।
କଃ କାଳସ୍ୟ ଭୁଜାନ୍ତରଂ ନ ଚ ଗତଃ କୋଽର୍ଥୀ ଗତୋ ଗୌରବଂ
କୋ ବା ଦୁର୍ଜନବାଗୁରାସୁ ପତିତଃ କ୍ଷେମେଣ ଯାତଃ ପୁମାନ୍ । ୧୫୩ ।

ଧନ ହେଲେ କିଏ ଗର୍ବିତ ନ ହୁଏ ? କେଉଁ ବିଷୟୀ ଲୋକର ବିପଦ ଦୂର ହୋଇଛି ? ସଂସାରରେ କାହାର ମନ ନାରୀଦ୍ୱାରା ବଶୀଭୂତ ହୋଇନାହିଁ ? ରାଜାଙ୍କର ପ୍ରିୟ ହୋଇ କିଏ ରହିଛି ? କିଏ ମୃତ୍ୟୁର କରଗତ ନ ହୁଏ ? ଯାଚକ ହୋଇ କିଏ ଗୌରବ ଲାଭ କରିଛି ? କେଉଁ ପୁରୁଷ ଦୁଷ୍ଟ ଲୋକର ଜାଲରେ ପଡ଼ି ସୁଖରେ ରହିଛି ?'' ୧୫୩ ।

ସଞ୍ଜୀବକ କହିଲା, "ବନ୍ଧୁ, ଏ କଅଣ କହୁଛ, ବୁଝାଇ ଦିଅ ।" ଦମନକ କହିଲା, "ମୁଁ ହତଭାଗ୍ୟ, ତୁମକୁ କଅଣ କହିବି ? ଦେଖ—

ମଜ୍ଜନ୍ନପି ପୟୋରାଶୌ ଲବ୍‌ଧ୍ୱା ସର୍ପାବଲମ୍ବନମ୍
ନ ମୁଞ୍ଚତି ନ ଗୃହ୍ଣାତି ତଥା ମୁଗ୍‌ଧୋଽସ୍ମି ସମ୍ପ୍ରତି । ୧୫୪ ।

ସମୁଦ୍ରରେ ବୁଡ଼ି ଯାଉଥିବା ବେଳେ ମନୁଷ୍ୟ ସାପର ଆଶ୍ରୟ ପାଇଲେ ଯେପରି ତାକୁ ଧରିପାରେ ନାହିଁ କି ଛାଡ଼ିପାରେ ନାହିଁ, ବର୍ତ୍ତମାନ ମୁଁ ସେହିପରି କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଛି । ୧୫୪ । ଯେହେତୁ—

ଏକତ୍ର ରାଜବିଶ୍ୱାସୋ ନଶ୍ୟତ୍ୟନ୍ୟତ୍ର ବାନ୍ଧବଃ
କିଂ କରୋମି କ୍ୱ ଗଚ୍ଛାମି ପତିତୋ ଦୁଃଖସାଗରେ । ୧୫୫ ।

ଗୋଟିଏ ପକ୍ଷରେ ରାଜବିଶ୍ୱାସ ନଷ୍ଟ ହେଉଛି ତ ଅନ୍ୟ ପକ୍ଷରେ ବନ୍ଧୁର ବିନାଶ ହେଉଛି । ଏହିପରି ଦୁଃଖ ସାଗରରେ ପଡ଼ି କଅଣ କରିବି, କୁଆଡ଼େ ଯିବି ସ୍ଥିର କରି ପାରୁ ନାହିଁ ।'' ୧୫୫ ।

ଏହା କହି ଦୀର୍ଘନିଶ୍ୱାସ ପକାଇ ଦମନକ ବସିଗଲା । ସଞ୍ଜୀବକ କହିଲା, "ମିତ୍ର, ତଥାପି ତୁମର ମନୋଗତ ଭାବ ବିଶଦରୂପେ ପ୍ରକାଶ କର ।'' ଦମନକ ଅତି ଗୁପ୍ତଭାବରେ କହିଲା, "ଯଦ୍ୟପି ରାଜାଙ୍କର

ବିଶ୍ୱାସ କଥା କହିବାର ନୁହେଁ, ତଥାପି ତୁମେ ମୋର ବିଶ୍ୱାସୀ ହୋଇଥିବାରୁ ଆସିଛି । ମୁଁ ପରଲୋକରେ ସଦ୍‌ଗତି ଚାହେଁ । ତେଣୁ ତୁମକୁ ତୁମର ହିତକର କଥା କହିବା ଉଚିତ । ଶୁଣ—

ଆମ ରାଜାଙ୍କର ମନ୍ଦ ଦୃଷ୍ଟି ତୁମ ଉପରେ ପଡ଼ିଛି । ମୋତେ ସେ ଏକାନ୍ତରେ କହିଲେ, "ଏ ସଞ୍ଜୀବକକୁ ବଧ କରି ମୋର ପରିବାରକୁ ସନ୍ତୁଷ୍ଟ କରିବି ।"

ଏହା ଶୁଣି ସଞ୍ଜୀବକ ନିତାନ୍ତ ବିଷଣ୍ଣ ହୋଇ ପଡ଼ିଲା । ଦମନକ ପୁଣି କହିଲା, "ଦୁଃଖ କରି କିଛି ଲାଭ ନାହିଁ । ସମୟ ଅନୁସାରେ କାର୍ଯ୍ୟ କର ।" ସଞ୍ଜୀବକ କିଛି କ୍ଷଣ ଚିନ୍ତା କରି ମନକୁମନ କହିଲା, "ଏ ଯାହା କହିଲା ଠିକ୍ ଅଥବା ଗୋଟାଏ ଦୁଷ୍ଟ ଲୋକର କୌଶଳ କି ନା ଏହାର ବ୍ୟବହାରରୁ ତାହା ବୁଝି ହେଉନାହିଁ । କାରଣ—

ଦୁର୍ଜନଗମ୍ୟା ନାର୍ଯ୍ୟଃ ପ୍ରାୟେଣାପାତ୍ରଭୃଦ୍‌ଭବତି ରାଜା ।
କୃପଣାନୁସାରି ଚ ଧନଂ ଦେବୋ ଗିରିଜଳଧିବର୍ଷୀ ଚ । ୧୫୬ ।

ସ୍ତ୍ରୀମାନେ ସାଧାରଣତଃ ଦୁର୍ଜନମାନଙ୍କ ପାଖକୁ ଯାଆନ୍ତି; ରାଜା ସାଧାରଣତଃ ଦୁଷ୍ଟମାନଙ୍କୁ ପାଳନ କରନ୍ତି; ଧନ ପ୍ରାୟଶଃ କୃପଣକୁ ଅନୁସରଣ କରେ; ମେଘ ପ୍ରାୟଶଃ ପର୍ବତରେ ଓ ସମୁଦ୍ରରେ ଜଳ ବର୍ଷା କରେ । ୧୫୬ ।

କଶ୍ଚିଦାଶ୍ରୟସୌନ୍ଦର୍ଯ୍ୟାଦ୍ଧତ୍ତେ ଶୋଭାମସଜ୍ଜନଃ ।
ପ୍ରମଦାଲୋଚନନ୍ୟସ୍ତଂ ମଳୀମସମିବାଞ୍ଜନମ୍ । ୧୫୭ ।

କଜ୍ଜ୍ୱଳ କଳା ହେଲେହେଁ ରମଣୀର ଚକ୍ଷୁକୁ ଆଶ୍ରୟ କରି ସୌନ୍ଦର୍ଯ୍ୟ ଲାଭ କଲା ପରି କେହି କେହି ଅସାଧୁ ଲୋକ ମଧ୍ୟ ଆଶ୍ରୟର ସୌନ୍ଦର୍ଯ୍ୟ ହେତୁରୁ ଶୋଭା ପାଇଥାନ୍ତି ।" ୧୫୭ ।

ଏହିପରି ବହୁତ ଚିନ୍ତା କରି ସଞ୍ଜୀବକ ପ୍ରକାଶ କରି କହିଲା, "ଓଃ ! ଏବେ ମହାନ୍ ବିପଦ ପଡ଼ିଲା । ସେହେତୁ—

ଆରାଧ୍ୟମାନୋ ନୃପତିଃ ପ୍ରଯତ୍ନା-
ନ୍ନ ତୋଷମାୟାତି କିମତ୍ର ଚିତ୍ରମ୍ ।
ଅୟଂ ତ୍ୱପୂର୍ବପ୍ରତିମାବିଶେଷୋ
ଯଃ ସେବ୍ୟମାନୋ ରିପୁତାମୁପୈତି । ୧୫୮ ।

ଅତ୍ୟନ୍ତ ଯତ୍ନ ସହକାରେ ରାଜାଙ୍କର ସେବା କଲେ ମଧ୍ୟ ସେ ପ୍ରସନ୍ନ ହୁଅନ୍ତି ନାହିଁ । ଏଥିରେ କିଛି ଆଶ୍ଚର୍ଯ୍ୟ ନାହିଁ । ଦେବ-ପ୍ରତିମାକୁ ସେବା କଲେ ସେ ପ୍ରସନ୍ନ ହୁଅନ୍ତି । କିନ୍ତୁ ରାଜାଙ୍କୁ ସେବା କଲେ ସୁଦ୍ଧା ସେ ଶତ୍ରୁତା କରନ୍ତି । ତେଣୁ ରାଜା ହେଉଛନ୍ତି ଏକ ଅପୂର୍ବ ପ୍ରତିମା ବିଶେଷ । ୧୫୮ ।

ଏହା ଅନୁମାନ କରିବା କଷ୍ଟକର ବିଷୟ । କାରଣ—

ନିମିତ୍ତମୁଦ୍ଦିଶ୍ୟ ହି ଯଃ ପ୍ରକୁପ୍ୟତି
ଧ୍ରୁବଂ ସ ତସ୍ୟାପଗମେ ପ୍ରସୀଦତି ।
ଅକାରଣଦ୍ୱେଷି ମନସ୍ତୁ ଯସ୍ୟ ବୈ
କଥଂ ଜନସ୍ତଂ ପରିତୋଷୟିଷ୍ୟତି । ୧୫୯ ।

ଯେଉଁ ବ୍ୟକ୍ତି କୌଣସି କାରଣରୁ କ୍ରୁଦ୍ଧ ହୋଇଥାନ୍ତି, ସେହି କାରଣ ଦୂର ହେଲେ ସେ ପୁଣି ନିଶ୍ଚୟ ପ୍ରସନ୍ନ ହୁଅନ୍ତି; କିନ୍ତୁ ଯାହାଙ୍କର ମନ ବିନା କାରଣରେ ଶତ୍ରୁଭାବାପନ୍ନ, ତାଙ୍କୁ କିପରି ସନ୍ତୁଷ୍ଟ କରି ପାରିବ ? ୧୫୯ ।

ମୁଁ ରାଜାଙ୍କର କି ଅପକାର କରିଛି ? ଅଥବା ରାଜାମାନେ ବିନା କାରଣରେ ମଧ୍ୟ ଅପକାର କରିଥାନ୍ତି ?"

ଦମନକ କହିଲା, "ତାହାହିଁ ହୋଇଥାଏ । ଶୁଣ—

ବଲ୍ଲେଁଃ ସ୍ନିଗ୍‌ଧୈରୁପକୃତମପି ଦ୍ୱେଷ୍ୟତାମେତି କୈଶ୍ଚିତ୍
ସାକ୍ଷାଦନ୍ୟୈରପକୃତମପି ପ୍ରୀତିମେବୋପଯାତି ।
ଚିତ୍ରଂ ଚିତ୍ରଂ କମଥ ଚରିତଂ ନୈକଭାବାଶ୍ରୟାଣାଂ
ସେବାଧର୍ମଃ ପରମଗହନୋ ଯୋଗିନାମପ୍ୟଗମ୍ୟଃ । ୧୬୦ ।

କୌଣସି କୌଣସି ରଜା ବୁଦ୍ଧିମାନ୍ ଓ ସ୍ନେହୀ ସେବକମାନଙ୍କ ଦ୍ୱାରା ଉପକୃତ ହୋଇ ମଧ୍ୟ ସେମାନଙ୍କ ପ୍ରତି ଶତ୍ରୁତା ଆଚରଣ କରିଥାନ୍ତି । ପୁଣି ଅନ୍ୟମାନଙ୍କ ଦ୍ୱାରା ପ୍ରତ୍ୟକ୍ଷରେ ଅପକୃତ ହୋଇ ମଧ୍ୟ ସେମାନଙ୍କ ପ୍ରତି ଆଦର ପ୍ରକାଶ କରିଥାନ୍ତି । ଚଞ୍ଚଳମତି ଲୋକ-ମାନଙ୍କର ସ୍ୱଭାବ ଏହିପରି ଆଶ୍ଚର୍ଯ୍ୟଜନକ । ଏଣୁ ସେବାଧର୍ମ ଏକ ଗହନ ବ୍ୟାପାର । ଯୋଗୀମାନଙ୍କ ପକ୍ଷରେ ମଧ୍ୟ ଏହା ଅଗମ୍ୟ । ୧୬୦ । ପୁଣି—

କୃତଶତମସତ୍ସୁ ନଷ୍ଟଂ ସୁଭାଷିତଶତଂ ଚ ନଷ୍ଟମବୁଧେଷୁ ।
ବଚନଶତମବଚନକରେ ବୁଦ୍ଧିଶତମଚେତନେ ନଷ୍ଟମ୍ । ୧୬୧ ।

ଦୁର୍ଜନ ପ୍ରତି ଶତ ଉପକାର କଲେହେଁ ତାହା ବୃଥା; ମୂର୍ଖକୁ ଶତ ଉପଦେଶ ଦେଲେହେଁ ତାହା ବୃଥା; ଯେ କଥା ମାନେ ନାହିଁ ତାକୁ ଶତ ଉପଦେଶବାଣୀ ଶୁଣାଇଲେ ବା ଜଡ଼କୁ ଶତ ଶତ ବୁଦ୍ଧି ଦେଲେ ତାହା ବିଫଳ ହୁଏ । ୧୬୧ । ପୁଣି—

ଚନ୍ଦନତରୁଷୁ ଭୁଜଙ୍ଗା ଜଳେଷୁ କମଳାନି ତତ୍ର ଚ ଗ୍ରାହାଃ
ଗୁଣଘାତିନଶ୍ଚ ଭୋଗେ ଖଳା ନ ଚ ସୁଖାନ୍ୟବିଘ୍ନାନି । ୧୬୨ ।

ଚନ୍ଦନ ବୃକ୍ଷରେ ସାପ ରହିଥାଏ; ଜଳରେ ପଦ୍ମ ସହିତ କୁମ୍ଭୀର ମଧ୍ୟ ଥାଏ; ଭୋଗରେ ଗୁଣନାଶକ ଖଳ ଲୋକ ରହିଥାନ୍ତି । ଅତଏବ କୌଣସିଠାରେ ବିଘ୍ନ ନ ଥାଇ ସୁଖ ନାହିଁ । ୧୬୨ ।

ମୂଳଂ ଭୁଜଙ୍ଗୈଃ କୁସୁମାନି ଭୃଙ୍ଗୈଃ
ଶାଖାଃ ପ୍ଲବଙ୍ଗୈଃ ଶିଖରାଣି ଭଲ୍ଲୈଃ ।
ନାସ୍ତ୍ୟେବ ତଚ୍ଚନ୍ଦନପାଦପସ୍ୟ
ଯନ୍ନାଶ୍ରିତଂ ଦୁଷ୍ଟତରୈଶ୍ଚ ହିଂସ୍ରୈଃ । ୧୭୩ ।

ଚନ୍ଦନ ବୃକ୍ଷର ମୂଳରେ ସାପମାନେ, ଫୁଲରେ ଭ୍ରମରମାନେ, ଶାଖାରେ ବାନର୍‌ମାନେ ଓ ଅଗ୍ରଭାଗରେ ଭଲ୍ଲୁକମାନେ ଆଶ୍ରୟ ନେଇଥାନ୍ତି । ଏହାର ଏପରି କୌଣସି ଅଂଶ ନାହିଁ, ଯେଉଁଠାରେକି ଦୁଷ୍ଟ ହିଂସ୍ର ଜୀବ ରହି ନ ଥାନ୍ତି । ୧୭୩ ।

ଏବେ ଜଣାଗଲା ଯେ ଆମର ରାଜା କଥାରେ ମଧୁର; କିନ୍ତୁ ତାଙ୍କର ଅନ୍ତରରେ ବିଷ ରହିଛି । ଯେହେତୁ—

ଦୂରାଦୁଚ୍ଛ୍ରିତପାଣିରାର୍ଦ୍ରନୟନଃ ପ୍ରୋତ୍ସାରିତାର୍ଦ୍ଧାସନୋ-
ଗାଢ଼ାଲିଙ୍ଗନତତ୍ପରଃ ପ୍ରିୟକଥାପ୍ରଶ୍ନେଷୁ ଦତ୍ତାଦରଃ ।
ଅନ୍ତର୍ଭୂତବିଷୋ ବହିର୍ମଧୁମୟଶ୍ଚାତୀବ ମାୟାପଟୁଃ
କୋ ନାମାୟମପୂର୍ବନାଟକବିଧିର୍ୟଃ ଶିକ୍ଷିତୋ ଦୁର୍ଜନୈଃ । ୧୭୪ ।

ରାଜା ଦୂରରୁ କେହି ଆସୁଥିବାର ଦେଖି ହାତ ବଢ଼ାଇ ତାଙ୍କୁ ସ୍ୱାଗତ କରନ୍ତି, ଆଖିରୁ ପ୍ରେମାଶ୍ରୁ ଗଡ଼ାନ୍ତି, ବସିବାପାଇଁ ନିଜ ଆସନରୁ ଅଧେ ଛାଡ଼ି ଦିଅନ୍ତି, ଗାଢ଼ ଆଲିଙ୍ଗନ କରନ୍ତି, ଆଦରରେ ମଧୁର କଥା କହି କୁଶଳ ପ୍ରଶ୍ନ ପଚାରନ୍ତି । ତାଙ୍କର ହୃଦୟ ବିଷମୟ ଓ ବାହାର ମଧୁମୟ । ସେ ବଡ଼ ମାୟାବୀ, ଅଭିନୟ ଦେଖାଇବାରେ ସେ ନିପୁଣ । କେଉଁ ଦୁଷ୍ଟ ଲୋକେ ତାଙ୍କୁ ଏ ଅପୂର୍ବ ଅଭିନୟ ବିଦ୍ୟା ଶିକ୍ଷାଦେଲେ ? ୧୭୪ । ପୁଣି—

ପୋତୋ ଦୁସ୍ତରବାରିରାଶିତରଣେ ଦୀପୋଽନ୍ଧକାରାଗମେ
ନିର୍ବାତେ ବ୍ୟଜନଂ ମଦାନ୍ଧକରିଣାଂ ଦର୍ପୋପଶାନ୍ତ୍ୟୈ ସୃଣିଃ ।
ଇତ୍ଥଂ ତଦ୍‌ଭୁବି ନାସ୍ତି ଯସ୍ୟ ବିଧିନା ନୋପାୟଚିନ୍ତା କୃତା
ମନ୍ୟେ ଦୁର୍ଜନଚିତ୍ତବୃତ୍ତିହରଣେ ଧାତାପି ଭଗ୍ନୋଦ୍ୟମଃ । ୧୭୫ ।

ବିଧାତା ଦୁସ୍ତର ଜଳରାଶି ତରିବା ପାଇଁ ବୋଇତ, ଅନ୍ଧକାର ଦୂର କରିବା ପାଇଁ ପ୍ରଦୀପ, ପବନ ନଥିଲେ ସେଥିପାଇଁ ପଙ୍ଖା ଓ ମତ୍ତ ହସ୍ତୀକୁ ଆୟତ୍ତ କରିବାପାଇଁ ଅଙ୍କୁଶ ସୃଷ୍ଟି କରି ଅଛନ୍ତି । ଏହିପରି ସଂସାରରେ ସବୁଥିପାଇଁ ଉପାୟ କରା ଯାଇଅଛି; କିନ୍ତୁ ଦୁର୍ଜନର ହୃଦୟ ପରିବର୍ତ୍ତନ ପାଇଁ ବିଧାତାଙ୍କର ସବୁ ଉଦ୍ୟମ ବିଫଳ ହୋଇ ଯାଇଅଛି ବୋଲି ମନେ ହୁଏ । ୧୭୫ ।

ଦୀର୍ଘନିଶ୍ୱାସ ପକାଇ ପୁଣି ସଞ୍ଜୀବକ କହିଲା, "ହାୟ, ମୁଁ ତୃଣାହାରୀ; ସିଂହ କାହିଁକି ମୋତେ ବଧ କରିବାକୁ ବସିଛନ୍ତି ? ପୁଣି—

ଯୟୋରେବ ସମଂ ବିତ୍ତଂ ଯୟୋରେବ ସମଂ ବଳମ୍
ତୟୋର୍ବିବାଦୋ ମନ୍ତବ୍ୟୋ ନୋତ୍ତମାଧମୟୋଃ କ୍ୱଚିତ୍ । ୧୭୬ ।

ଦୁଇଜଣଙ୍କର ସମାନ ଧନ ଥିଲେ, ସମାନ ବଳ ଥିଲେ ସେ ଦୁହିଙ୍କ ଭିତରେ ବିବାଦର କାରଣ ବୁଝି ହୁଏ; କିନ୍ତୁ ଉତ୍ତମ ଓ ଅଧମ ମଧ୍ୟରେ ବିବାଦର କାରଣ କେବେ ବୁଝି ହୁଏ ନାହିଁ ।" ୧୭୬ ।

ପୁଣି ଚିନ୍ତା କରି ସଞ୍ଜୀବକ କହିଲା, "କିଏ ମୋ ଉପରେ ରାଜାଙ୍କର ଶତ୍ରୁତା ଜନ୍ମାଇଲା ? ରାଜା ଶତ୍ରୁଭାବାପନ୍ନ ହେଲେ ତାଙ୍କୁ ଭୟ କରିବାର କଥା । କାରଣ—

ମନ୍ତ୍ରିଣା ପୃଥିବୀପାଳଚିତ୍ତଂ ବିଘଟିତଂ କ୍ୱଚିତ୍
ବଳୟଂ ସ୍ଫଟିକସ୍ୟେବ କୋହି ସନ୍ଧାତୁମୀଶ୍ୱରଃ । ୧୬୬ ।

ସ୍ଫଟିକ ନିର୍ମିତ କଙ୍କଣ ଭାଙ୍ଗିଗଲେ ଯୋଡ଼ ନ ହେବା ପରି ରାଜାଙ୍କର ମନ କୁମନ୍ତ୍ରଣାକାରୀଦ୍ୱାରା ଥରେ ଫାଟିଗଲେ ଆଉ ଯୋଡ଼ ହୁଏ ନାହିଁ । ୧୬୬ । ପୁଣି—

ବଜ୍ରଂ ଚ ରାଜତେଜଶ୍ଚ ଦ୍ୱୟମେବାତିଭୀଷଣମ୍
ଏକମେକତ୍ର ପତତି ପତତ୍ୟନ୍ୟତ୍ର ସମନ୍ତତଃ । ୧୬୮ ।

ବଜ୍ର ଓ ରାଜାଙ୍କ ତେଜ ଉଭୟେ ଅତି ଭୟଙ୍କର । ବଜ୍ର ଗୋଟିଏ ସ୍ଥାନରେ ପଡ଼େ; କିନ୍ତୁ ରାଜାଙ୍କ ତେଜ ସର୍ବତ୍ର ପଡ଼ିଥାଏ । ୧୬୮ ।

ଏଣୁ ସଂଗ୍ରାମରେ ମରିବା ବରଂ ଭଲ । ଏଣିକି ରାଜାଙ୍କର ଆଜ୍ଞା ପାଳନ କରିବା ଉଚିତ ନୁହେଁ । କାରଣ—

ମୃତଃ ପ୍ରାପ୍ନୋତି ବା ସ୍ୱର୍ଗଂ ଶତ୍ରୁଂ ହତ୍ୱା ସୁଖାନି ବା ।
ଉଭାବପି ହି ଶୂରାଣାଂ ଗୁଣାବେତୌ ସୁଦୁର୍ଲଭୌ । ୧୬୯ ।

ବୀର ଯୁଦ୍ଧ ଭୂମିରେ ପ୍ରାଣତ୍ୟାଗ କରି ସ୍ୱର୍ଗଲାଭ କରେ ଅଥବା ଶତ୍ରୁକୁ ବଧ କରି ସୁଖ ଭୋଗ କରେ । ବୀରର ଏହି ଉଭୟ ଗୁଣ ଅତି ଦୁର୍ଲଭ । ୧୬୯ । ଏ ହେଉଛି ଯୁଦ୍ଧର ସମୟ ।

ଯତ୍ରାଯୁଦ୍ଧେ ଧ୍ରୁବଂ ମୃତ୍ୟୁର୍ଯୁଦ୍ଧେ ଜୀବିତସଂଶୟଃ
ତମେବ କାଳଂ ଯୁଦ୍ଧସ୍ୟ ପ୍ରବଦନ୍ତି ମନୀଷିଣଃ । ୧୭୦ ।

ଯେଉଁଠାରେ ଯୁଦ୍ଧ ନ କଲେ ନିଶ୍ଚିତ ମୃତ୍ୟୁ ଓ ଯୁଦ୍ଧ କଲେ ପ୍ରାଣସଂଶୟ ଥାଏ, ସେଠାରେ ଯୁଦ୍ଧ କରିବା ଉଚିତ ବୋଲି ବୁଦ୍ଧିମାନ୍ ଲୋକେ କହିଥାନ୍ତି । ୧୭୦ । ଯେହେତୁ—

ଅଯୁଦ୍ଧେ ହି ଯଦା ପଶ୍ୟେନ୍ନ କିଞ୍ଚିଦ୍ଧିତମାତ୍ମନଃ ।
ଯୁଧ୍ୟମାନସ୍ତଦା ପ୍ରାଜ୍ଞୋ ମ୍ରିୟତେ ରିପୁଣା ସହ । ୧୭୧ ।

ଯେତେବେଳେ ବୁଦ୍ଧିମାନ୍ ଲୋକ ଦେଖେ ଯେ ଯୁଦ୍ଧ ନ କଲେ ନିଜର କିଛି ମଙ୍ଗଳ ହେବ ନାହିଁ, ସେତେବେଳେ ସେ ଶତ୍ରୁସଙ୍ଗେ ଯୁଦ୍ଧ କରି ପ୍ରାଣ ତ୍ୟାଗ କରେ । ୧୭୧ ।

ଜୟେ ଚ ଲଭତେ ଲକ୍ଷ୍ମୀଂ ମୃତେ ଚାପି ସୁରାଙ୍ଗନାମ୍
କ୍ଷଣବିଧ୍ୱଂସିନଃ କାୟାଃ କା ଚିନ୍ତା ମରଣେ ରଣେ । ୧୭୨ ।

ବୀର ଯୁଦ୍ଧରେ ଜୟ କରି ଲକ୍ଷ୍ମୀଙ୍କୁ ଲଭ କରେ ଅଥବା ମରି ସ୍ୱର୍ଗର ଅପ୍‌ସରାମାନଙ୍କ ସହ ମିଳିତ ହୁଏ । ଶରୀର କ୍ଷଣକରେ ନାଶ ଯାଏ । ତେଣୁ ଯୁଦ୍ଧରେ ମରିବାରେ ଦୁଃଖ କାହିଁକି ?" ୧୭୨ ।

ଏହିପରି ଚିନ୍ତା କରି ସଞ୍ଜୀବକ କହିଲା, "ମିତ୍ର, ରାଜା ମୋତେ ମାରିବାକୁ ଇଚ୍ଛା କରନ୍ତି ବୋଲି କିପରି ଜାଣିବି ?"

ଦମନକ କହିଲା, "ଯେତେବେଳେ ସେ ଲାଙ୍ଗୁଳକୁ ଟେକି, ପାଦକୁ ଉଠାଇ, ତୁଣ୍ଡକୁ ମେଲା କରି ତୁମ ଆଡ଼କୁ ଗୁହିଁବେ, ସେତେବେଳେ ତୁମେ ମଧ୍ୟ ନିଜର ପରାକ୍ରମ ଦେଖାଇବ । କାରଣ—

ବଳବାନପି ନିସ୍ତେଜାଃ କସ୍ୟ ନାଭିଭବାସ୍ପଦମ୍ ।
ନିଃଶଙ୍କଂ ଦୀୟତେ ଲୋକୈଃ ପଶ୍ୟ ଭସ୍ମଚୟେ ପଦମ୍ । ୧୭୩ ।

ବଳବାନ୍ ହୋଇଥିଲେ ମଧ୍ୟ ନିସ୍ତେଜ ଲୋକ ଅନାଦରର ପାତ୍ର ହୋଇଥାଏ । ଦେଖ, ପାଉଁଶ ନିସ୍ତେଜ ହୋଇଥିବାରୁ ଲୋକେ ନିର୍ଭୟରେ ତା ଉପରେ ପାଦ ଦେଇଥାନ୍ତି । ୧୭୩ ।

କିନ୍ତୁ ଏ ସବୁ ଅତି ଗୋପନରେ କରିବା ଆବଶ୍ୟକ । ତା ନ କଲେ ତୁମେ ମରିବ, ମୁଁ ମଧ୍ୟ ମରିବି ।” ଏହା କହି ଦମନକ କରଟକ ନିକଟକୁ ଗଲା । କରଟକ ପଚାରିଲା, “କହୋ, କଅଣ କଲ ?” ଦମନକ କହିଲା, “ସେ ଦୁହିଁଙ୍କ ଭିତରେ ଭେଦ ସୃଷ୍ଟି କରିଦେଇ ଆସିଛି ।” କରଟକ କହିଲା, “ଏଥିରେ ସନ୍ଦେହ କଣ ? ଯେଣୁ—

“ବନ୍ଧୁଃ କୋ ନାମ ଦୁଷ୍ଟାନାଂ
କୁପ୍ୟତେ କୋ ନ ଯାଚିତଃ
କୋ ନ ଦୃପ୍ୟତି ବିତ୍ତେନ
କୁକୃତ୍ୟେ କୋ ନ ପଣ୍ଡିତଃ । ୧୭୪ ।

ଦୁଷ୍ଟ ଲୋକର ବନ୍ଧୁ ହୋଇ କିଏ ଅଛି ? ଯାଚ୍ଞା କଲେ କିଏ ଅବା କ୍ରୁଦ୍ଧ ନ ହୁଏ ? ଧନ ହେତୁରୁ କିଏ ଗର୍ବିତ ନ ହୁଏ ? ଦୁଷ୍କର୍ମ କରିବାରେ କିଏ ପଣ୍ଡିତ ନୁହେଁ ? ୧୭୪ । ପୁଣି—

ଦୁର୍ବୃତ୍ତଃ କ୍ରିୟତେ ଧୂର୍ତ୍ତୈଃ ଶ୍ରୀମାନାତ୍ମବିବୃଦ୍ଧୟେ
କିଂ ନାମ ଖଳସଂସର୍ଗଃ କୁରୁତେ ନାଶ୍ରୟାଶବତ୍ । ୧୭୫ ।

ଶଠ ଲୋକ ନିଜର ଲାଭ ପାଇଁ ଶ୍ରୀମନ୍ତ ଲୋକଙ୍କୁ ମଧ୍ୟ ଦୁର୍ବୃତ୍ତ କରିପକାନ୍ତି । ଦୁଷ୍ଟ ସଂସର୍ଗ ଅଗ୍ନିପରି ସବୁ ନାଶ କରିପାରେ ।” ୧୭୫ ।

ତତ୍ପରେ ଦମନକ ପିଙ୍ଗଳକ ନିକଟକୁ ଯାଇ କହିଲା, “ହେ ରାଜନ୍, ସେ ପାପାତ୍ମା ଆସୁଛି । ତେଣୁ ଆପଣ ପ୍ରସ୍ତୁତ ହୋଇ ରହନ୍ତୁ ।” ଏହା କହି ସେ ତାହାଙ୍କୁ ପୂର୍ବକଥିତ ଆକାରରେ ପ୍ରସ୍ତୁତ କରି ରଖିଲା । ସଞ୍ଜୀବକ ସେଠାକୁ ଆସି ସିଂହର ଏପରି ବିକୃତ ଆକାର ଦେଖି ନିଜର ଶକ୍ତି ଅନୁସାରେ ପରାକ୍ରମ ଦେଖାଇଲା । ତହୁଁ ଦୁହିଁଙ୍କର ଯୁଦ୍ଧରେ ସଞ୍ଜୀବକ ସିଂହଦ୍ୱାରା ନିହତ ହେଲା ।

ପିଙ୍ଗଳକ ସେବକ ସଞ୍ଜୀବକକୁ ବଧ କରି କ୍ଲାନ୍ତ ହୋଇ ଦୁଃଖିତ ଭାବରେ ବସିଲା । ସେ କହିଲା, "ମୁଁ କି ଖରାପ କାର୍ଯ୍ୟ କଲି ! କାରଣ—

ପରୈଃ ସମ୍ଭୁଜ୍ୟତେ ରାଜ୍ୟଂ ସ୍ୱୟଂ ପାପସ୍ୟ ଭାଜନମ୍ ।
ଧର୍ମାତିକ୍ରମତୋ ରାଜା ସିଂହୋ ହସ୍ତିବଧାଦବ । ୧୭୬ ।

ସିଂହ ହସ୍ତୀକୁ ବଧ କରେ । ସମସ୍ତେ ମାଂସ ଖାଆନ୍ତି; କିନ୍ତୁ ଏକାକୀ ସିଂହ ହସ୍ତୀବଧ ପାପରେ ଭାଗୀ ହୁଏ । ସେହିପରି ରାଜା ଧର୍ମ ଲଙ୍ଘନ କରିବାଦ୍ୱାରା ନିଜେ ପାପରେ ଭାଗୀ ହୁଏ; ଅନ୍ୟମାନେ ରାଜ୍ୟସୁଖ ଭୋଗ କରନ୍ତି । ୧୭୬ । ପୁଣି—

ଭୂମ୍ୟେକଦେଶସ୍ୟ ଗୁଣାନ୍ୱିତସ୍ୟ
ଭୃତ୍ୟସ୍ୟ ବା ବୁଦ୍ଧିମତଃ ପ୍ରଣାଶଃ ।
ଭୃତ୍ୟପ୍ରଣାଶୋ ମରଣଂ ନୃପାଣାଂ
ନଷ୍ଟାପି ଭୂମିଃ ସୁଲଭା ନ ଭୃତ୍ୟାଃ ।" ୧୭୭ ।

ରାଜ୍ୟର ଏକ ଉର୍ବର ଅଂଶ ତଥା ବୁଦ୍ଧିମାନ୍ ଭୃତ୍ୟର ବିନାଶ ମଧ୍ୟରେ ଭୃତ୍ୟର ବିନାଶ ରାଜାଙ୍କ ପକ୍ଷରେ ମୃତ୍ୟୁ ତୁଲ୍ୟ ଅଟେ । କାରଣ ଭୂମି ନଷ୍ଟ ହେଲେ ପୁଣି ସହଜରେ ମିଳିପାରେ । କିନ୍ତୁ ଭୃତ୍ୟର ମୃତ୍ୟୁ ହେଲେ ସେ ଆଉ ଫେରି ଆସିବ ନାହିଁ ।" ୧୭୭ ।

ଦମନକ କହିଲା, "ପ୍ରଭୁ, ଆପଣଙ୍କର ଏ କି ନୂଆ ମତି ? ଶତ୍ରୁକୁ ବଧ କରି ସନ୍ତାପ କରୁଛନ୍ତି କାହିଁକି ? କଥିତ ଅଛି—

ପିତା ବା ଯଦି ବା ଭ୍ରାତା ପୁତ୍ରୋ ବା ଯଦି ବା ସୁହୃତ୍ ।
ପ୍ରାଣଚ୍ଛେଦକରା ଯାଜ୍ଞା ହନ୍ତବ୍ୟା ଭୂତିମିଚ୍ଛତା । ୧୭୮ ।

ପିତା ହେଉ, ଭାଇ ହେଉ, ପୁଅ ହେଉ ବା ବନ୍ଧୁ ହେଉ—ଯଦି କେହି ରାଜାଙ୍କ ପ୍ରାଣନାଶ କରିବାକୁ ଚେଷ୍ଟିତ ହୁଏ, ନିଜର ମଙ୍ଗଳକାମୀ ରାଜା ତାହାକୁ ବଧ କରିବା ଉଚିତ । ୧୭୮ । ପୁଣି—

ଧର୍ମାର୍ଥକାମତତ୍ତ୍ୱଜ୍ଞୋ ନୈକାନ୍ତକରୁଣୋ ଭବେତ୍ ।
ନ ହି ହସ୍ତସ୍ଥମପ୍ୟନ୍ନଂ କ୍ଷମାବାନ୍ ଭକ୍ଷିତୁଂ କ୍ଷମଃ । ୧୭୯ ।

ଯେଉଁ ଲୋକ ଧର୍ମ, ଅର୍ଥ ଓ କାମର ପ୍ରକୃତ ତତ୍ତ୍ୱ ଜାଣେ, ସେ ଏକାନ୍ତ ଦୟାଳୁ ହେବା ଉଚିତ ନୁହେଁ । ଅତ୍ୟନ୍ତ କ୍ଷମାଶୀଳ ବ୍ୟକ୍ତି ନିଜର ହସ୍ତସ୍ଥିତ ଅନ୍ନକୁ ମଧ୍ୟ ଭୋଜନ କରିବାକୁ ସମର୍ଥ ହୁଏ ନାହିଁ । ୧୭୯ । ପୁଣି—

କ୍ଷମା ଶତ୍ରୌ ଚ ମିତ୍ରେ ଚ ଯତୀନାମେବ ଭୂଷଣମ୍ ।
ଅପରାଧିଷୁ ସତ୍ତ୍ୱେଷୁ ନୃପାଣାଂ ସୈବ ଦୂଷଣମ୍ । ୧୮୦ ।

ଶତ୍ରୁ ତଥା ମିତ୍ର ଉଭୟଙ୍କ ପ୍ରତି କ୍ଷମା ଆଚରଣ କରିବା ଯୋଗୀଋଷିମାନଙ୍କର ଭୂଷଣ ହୋଇପାରେ; କିନ୍ତୁ ଅପରାଧୀ ପ୍ରାଣୀ ପ୍ରତି କ୍ଷମାପ୍ରଦର୍ଶନ କରିବା ରାଜାଙ୍କ ପକ୍ଷରେ ଦୂଷଣ ଅଟେ । ୧୮୦ । ଆହୁରି ମଧ୍ୟ—

ରାଜ୍ୟଲୋଭାଦହଙ୍କାରାଦିଚ୍ଛତଃ ସ୍ୱାମିନଃ ପଦମ୍ ।
ପ୍ରାୟଶ୍ଚିତ୍ତଂ ତୁ ତସ୍ୟୈକଂ ଜୀବୋତ୍ସର୍ଗୋ ନ ଚାପରମ୍ । ୧୮୧ ।

ରାଜ୍ୟ ଲୋଭ ହେଲରୁ ଅଥବା ଅହଙ୍କାର ହେତୁରୁ ଯେଉଁ ଲୋକ ପ୍ରଭୁଙ୍କର 'ରାଜପଦକୁ ଇଚ୍ଛା କରେ, ତାର ଏକ ମାତ୍ର ପ୍ରାୟଶ୍ଚିତ୍ତ ହେଉଛି ପ୍ରାଣତ୍ୟାଗ । ଏହା ଛଡ଼ା ତାର ଅନ୍ୟ ପ୍ରାୟଶ୍ଚିତ୍ତ ନାହିଁ । ୧୮୧ । ପୁଣି—

ରାଜା ଘୃଣୀ ବ୍ରାହ୍ମଣ ସର୍ବଭକ୍ଷୀ
ସ୍ତ୍ରୀ ଚାବଶା ଦୁଷ୍ଟ୍ରକୃତଃ ସହାୟଃ ।
ପ୍ରେଷ୍ୟଃ ପ୍ରତୀପୋଽଧିକୃତଃ ପ୍ରମାଦୀ
ତ୍ୟାଜ୍ୟା ଇମେ ଯଶ୍ଚ କୃତଂ ନ ବେତ୍ତି । ୧୮୨ ।

ଦୟାଳୁ ରାଜା, ସର୍ବଗ୍ରାସୀ ବ୍ରାହ୍ମଣ, ଅବାଧ୍ୟ ସ୍ତ୍ରୀ, ମନ୍ଦପ୍ରକୃତିକ ସାହାଯ୍ୟକାରୀ, ପ୍ରତିକୂଳ ଭୃତ୍ୟ, ପ୍ରମାଦଯୁକ୍ତ ଅଧିକାରୀ, ଯିଏ ନଜର କର୍ତ୍ତବ୍ୟ ବିଷୟରେ ଅନଭିଜ୍ଞ—ଏମାନଙ୍କୁ ତ୍ୟାଗ କରିବା ଉଚିତ । ୧୮୨ । ବିଶେଷତଃ—

ସତ୍ୟାନୃତା ଚ ପରୁଷା ପ୍ରିୟବାଦିନୀ ଚ
ହିଂସ୍ରା ଦୟାଳୁରପି ଚାର୍ଥପରା ବଦାନ୍ୟା ।
ନିତ୍ୟବ୍ୟୟା ପ୍ରଚୁରରତ୍ନଧନାଗମା ଚ
ବାରାଙ୍ଗନେବ ନୃପନୀତିରନେକରୂପା । ୧୮୩ ।

ରାଜନୀତି ହେଉଛି ବେଶ୍ୟାପରି ବହୁରୂପୀ । ରାଜନୀତିରେ ବେଶ୍ୟାପରି କେଉଁଠାରେ ସତ୍ୟ କହିବାକୁ ହେବ ତ କେଉଁଠାରେ ମିଥ୍ୟା କହିବାକୁ ହେବ । କେଉଁଠାରେ କଠୋର ହେବାକୁ ପଡ଼ିବ, କେଉଁଠାରେ ଦୟାଳୁ ହେବାକୁ ପଡ଼ିବ । କେଉଁଠାରେ ଧନଲୋଭ କରିବାକୁ ହେବ, କେଉଁଠାରେ ଦାନୀ ହେବାକୁ ହେବ । କେଉଁଠାରେ ନିତ୍ୟବ୍ୟୟୀ ହେଲେ ଅନ୍ୟ କେଉଁଠାରେ ପ୍ରଚୁରଧନରତ୍ନ ଅର୍ଜନର ଚେଷ୍ଟା କରିବାକୁ ହେବ ।" ୧୮୩ ।

ଦମନକ ଏହିପରି ବୁଝାଇବାରୁ ପିଙ୍ଗଳକ ସନ୍ତୋଷ ଲାଭ କଲା ଓ ପ୍ରକୃତିସ୍ଥ ହୋଇ ସିଂହାସନ ଉପରେ ବସିଲା । ଦମନକ ଆନନ୍ଦିତ ହୋଇ "ମହାରାଜାଙ୍କର ଜୟ ହେଉ, ଜଗତର ମଙ୍ଗଳ ହେଉ" ଏହା କହି ସୁଖରେ ରହିଲା ।

ବିଷ୍ଣୁଶର୍ମା କହିଲେ, "ହେ ରାଜପୁତ୍ରଗଣ, ତୁମେମାନେ ଏବେ ସୁହୃଦ୍‌ଭେଦ ଶୁଣିଲ ।" ରାଜପୁତ୍ରମାନେ କହିଲେ, "ଆପଣଙ୍କ ଅନୁଗ୍ରହରୁ ଏହା ଶୁଣିଲୁ । ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହୋଇଅଛୁ ।" ବିଷ୍ଣୁଶର୍ମା କହିଲେ, "ଏହା ଛଡ଼ା ଆଉ ଗୋଟିଏ କଥା ହେଉ—

ସୁହୃଦ୍‌ଭେଦସ୍ତାବଦ୍‌ଭବତୁ ଭବତାଂ ଶତ୍ରୁନିଳୟେ
ଖଳଃ କାଳାକୃଷ୍ଟଃ ପ୍ରଳୟମୁପସର୍ପତ୍ୱହରହଃ ।
ଜନୋ ନିତ୍ୟଂ ଭୂୟାତ୍ ସକଳ ସୁଖସମ୍ପତ୍ତିବସତିଃ
କଥାରମ୍ଭେ ରମ୍ୟେ ସତତମିହ ବାଳୋଽପି ରମତାମ୍ । ୧୮୪ ।

ତୁମ୍ଭମାନଙ୍କ ଶତ୍ରୁଙ୍କ ଘରେ ସୁହୃଦ୍‌ଭେଦ ହେଉ । ଖଳ ଲୋକେ କାଳଦ୍ୱାରା ଆକୃଷ୍ଟ ହୋଇ ବିନାଶ ନିକଟରେ ଉପସ୍ଥିତ ହୁଅନ୍ତୁ । ଲୋକେ ସକଳ ସୁଖସମ୍ପତ୍ତିର ଆଧାର ହୁଅନ୍ତୁ । ଆଉ ମୋର ଏହି ସୁନ୍ଦର କଥାର ଆରମ୍ଭରୁ ବାଳକମାନେ ସର୍ବଦା ମଜ୍ଜି ରହନ୍ତୁ ।" ୧୮୪ ।